# ଅନାଗାରିକ ଧର୍ମପାଳ

# Ven. Anagarika Dharmapala



ଡ଼କ୍ଟର ବିମଳେନ୍ଦୁ ମହାନ୍ତି

# ବୌଦ୍ଧଧର୍ମ ସଂସ୍ଥାପକ
# ଅନଗାରିକ ଧର୍ମପାଳ

ଡକ୍ଟର ବିମଳେନ୍ଦୁ ମହାନ୍ତି

ଭାରତର ମହାବୋଧି ସୋସାଇଟି
ଓଡ଼ିଶା ଶାଖା, ଭୁବନେଶ୍ୱର

# ଉତ୍ସର୍ଗ

ଅନଗାରିକ ଧର୍ମପାଳଙ୍କର ବଂଶଜ

ସମ୍ମାନନୀୟ **ପ୍ରସନ୍ନ ଜୟସୁରିୟା**

ଭାରତ ମହାବୋଧି ସୋସାଇଟିର ସଭାପତିଙ୍କ

କରକମଳରେ ଅର୍ପିତ.....

# ପ୍ରାକ୍ କଥନ

ବୌଦ୍ଧଧର୍ମ ସମ୍ବନ୍ଧରେ ଆଲୋଚନା କଲେ ମହାମାନବ ଅନଗାରିକ ଧର୍ମପାଳ କିଭଳି ଏହି ଧର୍ମର ପ୍ରଚାରରେ ସାରାଜୀବନ ନିଜକୁ ଉତ୍ସର୍ଗ କରିଥିଲେ ତାହା ମନେ ପଡ଼ିଯାଏ । ସିଂହଳରେ ୧୭ ସେପ୍ଟେମ୍ବର ୧୮୬୪ ମସିହାରେ ଜନ୍ମିତ ଏହି ଯୁଗପୁରୁଷ ତାଙ୍କ ଦେଶରେ ବୌଦ୍ଧଧର୍ମାବଲମ୍ବୀମାନଙ୍କ ଦୁର୍ଦ୍ଦଶା ଓ ଭାରତରେ ବୌଦ୍ଧ ତୀର୍ଥସ୍ଥଳୀ ବୁଦ୍ଧଗୟା, ସାରନାଥ ପ୍ରଭୃତି ସ୍ଥାନର ଦୂରବସ୍ଥା ଦେଖି ବୌଦ୍ଧଧର୍ମର ପୁନରୁତ୍‌ଥାନ ଓ ବୌଦ୍ଧପୀଠଗୁଡ଼ିକର ପୁନଃପ୍ରତିଷ୍ଠା ପାଇଁ ସାରାଜୀବନ ଯେଭଳି ଭାବେ କଷ୍ଟ ସ୍ୱୀକାର କରି ନିଜ ଲକ୍ଷ୍ୟ ସାଧନରେ ସଫଳ ହେଲେ ତାହା ଅବର୍ଣ୍ଣନୀୟ । ସେହି ମହାପୁରୁଷ ୧୮୯୩ ମସିହା ସେପ୍ଟେମ୍ବର ମାସ ୧୮ ତାରିଖ ଦିନ ଚିକାଗୋରେ ଅନୁଷ୍ଠିତ ଧର୍ମମହାସଭାରେ 'ବୁଦ୍ଧଙ୍କ ପାଖରେ ବିଶ୍ୱ ଋଣୀ' ଶୀର୍ଷକ ବକ୍ତୃତା ପ୍ରଦାନ କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଥିଲେ ଏବଂ ବୌଦ୍ଧଧର୍ମ ପାଇଁ ଏକ ନୂତନ ଯୁଗର ଭିତ୍ତିଭୂମି ପ୍ରସ୍ତୁତ କରିଥିଲେ ।

ସ୍ୱାମୀ ବିବେକାନନ୍ଦ ଅନଗାରିକ ଧର୍ମପାଳଙ୍କଠାରୁ ବୟସରେ ମାତ୍ର ୪ଠର ମାସ ବଡ଼; କିନ୍ତୁ ଭାରତରେ ତାଙ୍କ କାର୍ଯ୍ୟାବଳୀ ଦେଖି ତା'ର [illegible] ଭୂୟସୀ ପ୍ରଶଂସା କରୁଥିଲେ ବୋଲି ତାଙ୍କ ଜୀବନୀରେ ଉଲ୍ଲେଖ ରହିଛି । ଏହା ମଧ୍ୟ ମତେ ଅନଗାରିକ ଧର୍ମପାଳଙ୍କ ବିଷୟରେ କିଛି ତଥ୍ୟ ଲୋକଲୋଚନକୁ ଆଣିବାକୁ ପ୍ରେରଣା ଦେଲା ।

ଆମ ରାଜ୍ୟ ଏକ ମହାନ ପୁଣ୍ୟଭୂମି ଯେଉଁଠାରେ ସମ୍ରାଟ ଅଶୋକ ଖ୍ରୀ.ପୂ. ୨୬୧ ମସିହାରେ କଳିଙ୍ଗ ଯୁଦ୍ଧର ଭୟାବହତା ଅନୁଭବ କରି ଓଡ଼ିଶାର ବୌଦ୍ଧସନ୍ନ୍ୟାସୀ ଉପଗୁପ୍ତଙ୍କ ଦ୍ୱାରା ଦିବ୍ୟଜ୍ଞାନ ଲାଭ କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଓ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ ।

ଆମ ରାଜ୍ୟର ପୁଷ୍ପଗିରି, ଲଳିତଗିରି, ରତ୍ନଗିରି, ଉଦୟଗିରି ପ୍ରଭୃତି ବୌଦ୍ଧକୀର୍ତ୍ତି ବିଶ୍ୱବିଖ୍ୟାତ । ଓଡ଼ିଶାର କୋଣେ ଅନୁକୋଣେ ବୌଦ୍ଧସ୍ତୁପ, ମନ୍ଦିର, ବୌଦ୍ଧମୂର୍ତ୍ତି ଆଦି ବିଛାଇ ହୋଇ ରହିଛି । ଓଡ଼ିଶାର ବହୁ ଅଞ୍ଚଳରେ ବୌଦ୍ଧଧର୍ମାବଲମ୍ବୀମାନେ ବର୍ତ୍ତମାନ ମଧ୍ୟ ଦେଖିବାକୁ ମିଳନ୍ତି । ବିଶେଷକରି ମାଣିଆବନ୍ଧ, ନୂଆପାଟଣା, ରଗଡ଼ି, ଯୋରିପାଟଣା ପ୍ରଭୃତି ଗାଁଗୁଡ଼ିକ ସାରା ଭାରତରେ ବିଖ୍ୟାତ ।

ଅନଗାରିକ ଧର୍ମପାଳଙ୍କ ସମ୍ବନ୍ଧରେ ଓଡ଼ିଶାରେ ଚର୍ଚ୍ଚା କମ୍ । ଅନଗାରିକ ଧର୍ମପାଳଙ୍କ ଭଳି ତ୍ୟାଗବୀର ବିରଳ । ଏହି ମହାପୁରୁଷଙ୍କ ଜୀବନଦର୍ଶନ, କାର୍ଯ୍ୟାବଳୀ ସମ୍ବନ୍ଧରେ ଓଡ଼ିଆରେ ଗୋଟିଏ ପୁସ୍ତକର ଅଭାବ ଅନୁଭବ କଲି; ତେଣୁ ଗୋଟିଏ

କ୍ଷୁଦ୍ର ପୁସ୍ତକ ରଚ଼ନା କରିବାକୁ ମନସ୍ଥ କଲି । ତାଙ୍କ ଜୀବନୀ ପାଠକରି ବୌଦ୍ଧଧର୍ମର ଆଦର୍ଶକୁ ଯଦି କିଛି ଲୋକ ଗ୍ରହଣ କରନ୍ତି ତେବେ ମୋର ଶ୍ରମ ସାର୍ଥକ ହେବ ।

ଏହି ପୁସ୍ତକ ଲେଖିବାକୁ ମୋତେ ଭାରତ ମହାବୋଧି ସୋସାଇଟିର ସାଧାରଣ ସଂପାଦକ ଡକ୍ଟର ରେୱଥା ଥେରୋ (Dr. Rewatha Thero) ଓ ଓଡ଼ିଶା ମହାବୋଧି ସୋସାଇଟିର ସଭାପତି ରେଭରେଣ୍ଡ ଜି. ସଦାତିଶ ଥେରୋ (G. Sadatisha Thero) ଓ ସଂପାଦକ ଶ୍ରୀଯୁକ୍ତ ସୌରେନ୍ଦ୍ର ମହାପାତ୍ର ପ୍ରେରଣା ଯୋଗାଇ ଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ସ୍ୱନାମଧନ୍ୟ ଔପନ୍ୟାସିକ ଓ ଗାଳ୍ପିକ ଡଃ ବିଭୁତି ପଟ୍ଟନାୟକ ଓ ବିଶିଷ୍ଟ ସାହିତ୍ୟିକ (ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରାକ୍ତନ ସଂପାଦକ) ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ଦାସ ଏହି ପୁସ୍ତକଟିକୁ ଆମୂଳଚୂଳ ପାଠକରି ସେମାନଙ୍କ ମତାମତ ଦେଇ ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ବିମଳେନ୍ଦୁ ମହାନ୍ତି

(ଡକ୍ଟର ବିମଳେନ୍ଦୁ ମହାନ୍ତି)

# ମୁଖବନ୍ଧ

ଡାଭିଡ ହେୱାଇଥେରନା, ଅନଗାରିକ ଧର୍ମପାଳ, ଦେବମିତ୍ର ଧର୍ମପାଳ ଏପରି ଜଣକର ନାଁ ଯାହା ବୁଦ୍ଧ, ବିବେକାନନ୍ଦ ଓ ଗାନ୍ଧିଙ୍କ ପରି ପୃଥିବୀର ସବୁଲୋକ ମନେ ରଖିବେ । ଅଥଚ୍ ସବୁଲୋକ ତ ଦୂରର କଥା, ସିଂହଳ ଓ ଭାରତର ଏଇ ପୀଢ଼ିର ଲୋକେ ଏଇ ନାଁ ଭୁଲିଯିବାକୁ ବସିଲେଣି । ସେଇଥିପାଇଁ ବିମଳେନ୍ଦୁ ମହାନ୍ତି ଅନଗାରିକ ଧର୍ମପାଳଙ୍କ ଜୀବନୀ ଲେଖି ଯୁବପୀଢ଼ିର ଅଶେଷ ଉପକାର କରିଛନ୍ତି ।

ବୁଦ୍ଧଙ୍କର ଦୁଇ ପ୍ରଥମ ଶିଷ୍ୟ ତପସ୍ସୁ ଓ ଭଲ୍ଲିକ ଓଡ଼ିଆ । ଏବେ ସେମାନଙ୍କର ସମାଧିସ୍ତୁପ ବାହାରିଛି । ଭିକ୍ଷୁ ଉପଗୁପ୍ତ କଳିଙ୍ଗଯୁଦ୍ଧ ପରେ ଧଉଳିରେ ଚଣ୍ଡାଶୋକଙ୍କୁ ଧମ୍ମାଶୋକରେ ବଦଳେଇ ଦେଇଥିଲେ । ଧଉଳିଗିରି, ପୁଷ୍ପଗିରି, ରତ୍ନଗିରି ପରି ବୌଦ୍ଧ ଶିକ୍ଷାୟତନ ଓଡ଼ିଶାର ଟେକ ରଖିଥିଲା । ଏବେ ବି ତିଗିରିଆର ନୂଆପାଟଣା, ବଡ଼ମ୍ବାର ମାଣିଆବନ୍ଧ, ବାଙ୍କିର ରଗଡ଼ି ଓ ପାଖ ଆଖର ଗାଁ ମାନଙ୍କରେ ବୌଦ୍ଧଧର୍ମର ଚଳନ୍ତି ପରମ୍ପରା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଜଗନ୍ନାଥ ଏବେ ବି ବୁଦ୍ଧ । ଜନ୍ମସ୍ଥାନ ଭାରତରୁ ବୌଦ୍ଧଧର୍ମ ଲୋପ ପାଇଯାଇଥିବା ବେଳେ ଓଡ଼ିଶା ବାଦ ଯାଇଥାନ୍ତା କେମିତି ? ତେଣୁ ଭାରତୀୟ ମହାବୋଧି ସୋସାଇଟିର ସାଧାରଣ ସମ୍ପାଦକ ରେୱାଥା ଥେରୋ ଏବଂ ଭୁବନେଶ୍ୱର ମହାବୋଧି ସୋସାଇଟିର ସଭାପତି ଜି. ସଦାତିସ୍ସ ଥେରୋଙ୍କ ପ୍ରେରଣାରେ ଓଡ଼ିଆରେ ଏହି ବହି ଛପାଯିବା ଏକାନ୍ତ ଯଥାର୍ଥ ।

ସିଂହଳର ପତ୍ରିକାମାନେ ଧର୍ମପାଳଙ୍କୁ ସମ୍ମାନନୀୟ ସିଂହଳି ଭାବେ ପରିଚିତ କରେଇଛନ୍ତି । କୌଣସି ଭାରତୀୟ ସମ୍ବାଦପତ୍ର ତାଙ୍କୁ ବିଶିଷ୍ଟ ଭାରତୀୟ କହିଥିବା ମୁଁ ଜାଣେ ନାହିଁ । ଅଥଚ୍ ଭାରତରେ ବୁଦ୍ଧଧର୍ମର ପୁନର୍ଜାଗରଣ ପାଇଁ ସେ ଯେତେ କାମ କରିଛନ୍ତି, ତା'ର ତୁଳନା ନାହିଁ । ତାଙ୍କ ଶେଷ ଉଇଲରେ ସେ ଭାରତରେ ପୁନର୍ଜନ୍ମର ଆଶା ପୋଷଣ କରିଛନ୍ତି । ଭାରତ ପ୍ରତି ତାଙ୍କର ଟାଣ ଏତେ ବେଶି ଯେ ସିଏ ତାଙ୍କ ଜନ୍ମଭୂମି ଛାଡ଼ି ସାରନାଥରେ ମରିବାକୁ ପସନ୍ଦ କରିଥିଲେ । ବୁଦ୍ଧଗୟା, ସାରନାଥ, ବାରାଣସୀ, କଲିକତାରେ ବୌଦ୍ଧଧର୍ମର ପୁନଃପ୍ରତିଷ୍ଠା ତାଙ୍କୁ ଯେତିକି ଭାରତୀୟ କରିଚି, ବର୍ମା (ମ୍ୟାନମାର), ଶାୟାମ (ଥାଇଲାଣ୍ଡ), ସିଲୋନ (ଶ୍ରୀଲଙ୍କା), ଭାରତ, ଚୀନ, ଜାପାନ, ଆମେରିକା, ଇଂଲଣ୍ଡରେ ବୌଦ୍ଧଧର୍ମର ପ୍ରଚୁର ପ୍ରସାର ତାଙ୍କୁ ସେତିକି ବିଶ୍ୱନାଗରିକ କରିଚି । କିନ୍ତୁ ସେ ତ ଅ+ନାଗରିକ । ପୁଣି ଅଣ+ଆଗାରିକ । ତାଙ୍କର ନା ରାଜ୍ୟ ଅଛି, ନା ଘର । ତାଙ୍କର କାମ ହିଁ ତାଙ୍କର ପରିଚୟ ।

ସେଇ ମହାପୁରୁଷ ମହାନ ଆତ୍ମାଙ୍କଠାରେ ମୁଁ ଶରଣ ନେଉଛି ।

ଦେବୀପ୍ରସନ୍ନ ପଟ୍ଟନାୟକ

(ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ)
ପ୍ରାକ୍ତନ ପ୍ରତିଷ୍ଠାତା ନିର୍ଦ୍ଦେଶକ
ଭାରତୀୟ ଭାଷା ସଂସ୍ଥାନ, ମହୀଶୁର
ସେବା ନିବୃତ୍ତ ଆଡିସନାଲ ସେକ୍ରେଟାରୀ, ଭାରତ ସରକାର

କ୍ଷୁଦ୍ର ପୁସ୍ତକ ରଚ଼ନା କରିବାକୁ ମନସ୍ଥ କଲି । ତାଙ୍କ ଜୀବନୀ ପାଠକରି ବୌଦ୍ଧଧର୍ମର ଆଦର୍ଶକୁ ଯଦି କିଛି ଲୋକ ଗ୍ରହଣ କରନ୍ତି ତେବେ ମୋର ଶ୍ରମ ସାର୍ଥକ ହେବ ।

ଏହି ପୁସ୍ତକ ଲେଖିବାକୁ ମୋତେ ଭାରତ ମହାବୋଧି ସୋସାଇଟିର ସାଧାରଣ ସଂପାଦକ ଡକ୍ଟର ରେୱଥା ଥେରୋ (Dr. Rewatha Thero) ଓ ଓଡ଼ିଶା ମହାବୋଧି ସୋସାଇଟିର ସଭାପତି ରେଭରେଣ୍ଡ ଜି. ସଦାତିଶ ଥେରୋ (G. Sadatisha Thero) ଓ ସଂପାଦକ ଶ୍ରୀଯୁକ୍ତ ସୌରେନ୍ଦ୍ର ମହାପାତ୍ର ପ୍ରେରଣା ଯୋଗାଇ ଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ସ୍ୱନାମଧନ୍ୟ ଔପନ୍ୟାସିକ ଓ ଗାଳ୍ପିକ ଡଃ ବିଭୂତି ପଟ୍ଟନାୟକ ଓ ବିଶିଷ୍ଟ ସାହିତ୍ୟିକ (ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରାକ୍ତନ ସଂପାଦକ) ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ଦାସ ଏହି ପୁସ୍ତକଟିକୁ ଆମୂଳଚୂଳ ପାଠକରି ସେମାନଙ୍କ ମତାମତ ଦେଇ ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ବିମଳେନ୍ଦୁ ମହାନ୍ତି

(ଡକ୍ଟର ବିମଳେନ୍ଦୁ ମହାନ୍ତି)

# ମୁଖବନ୍ଧ

ତାଭିତ ହେୱାଇଥେରନା, ଅନଗାରିକ ଧର୍ମପାଳ, ଦେବମିତ୍ତ ଧର୍ମପାଳ ଏପରି ଜଣକର ନାଁ ଯାହା ବୁଦ୍ଧ, ବିବେକାନନ୍ଦ ଓ ଗାନ୍ଧିଙ୍କ ପରି ପୃଥିବୀର ସବୁଲୋକ ମନେ ରଖିବେ । ଅଥଚ୍ ସବୁଲୋକ ତ ଦୂରର କଥା, ସିଂହଳ ଓ ଭାରତର ଏଇ ପୀଢ଼ିର ଲୋକେ ଏଇ ନାଁ ଭୁଲିଯିବାକୁ ବସିଲେଣି । ସେଇଥିପାଇଁ ବିମଳେନ୍ଦୁ ମହାନ୍ତି ଅନଗାରିକ ଧର୍ମପାଳଙ୍କ ଜୀବନୀ ଲେଖି ଯୁବପୀଢ଼ିର ଅଶେଷ ଉପକାର କରିଛନ୍ତି ।

ବୁଦ୍ଧଙ୍କର ଦୁଇ ପ୍ରଥମ ଶିଷ୍ୟ ତପସ୍ସୁ ଓ ଭଲ୍ଲିକ ଓଡ଼ିଆ । ଏବେ ସେମାନଙ୍କର ସମାଧିସ୍ତୁପ ବାହାରିଛି । ଭିକ୍ଷୁ ଉପଗୁପ୍ତ କଳିଙ୍ଗଯୁଦ୍ଧ ପରେ ଧଉଳିରେ ଚଣ୍ଡାଶୋକଙ୍କୁ ଧମ୍ମାଶୋକରେ ବଦଳେଇ ଦେଇଥିଲେ । ଧଉଳିଗିରି, ପୁଷ୍ପଗିରି, ରତ୍ନଗିରି ପରି ବୌଦ୍ଧ ଶିକ୍ଷାୟତନ ଓଡ଼ିଶାର ଟେକ ରଖିଥିଲା । ଏବେ ବି ତିଗିରିଆର ନୂଆପାଟଣା, ବଡ଼ମ୍ବାର ମାଣିଆବନ୍ଧ, ବାଙ୍କିର ରଗଡ଼ି ଓ ପାଖ ଆଖର ଗାଁ ମାନଙ୍କରେ ବୌଦ୍ଧଧର୍ମର ଚଳନ୍ତି ପରମ୍ପରା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଜଗନ୍ନାଥ ଏବେ ବି ବୁଦ୍ଧ । ଜନ୍ମସ୍ଥାନ ଭାରତରୁ ବୌଦ୍ଧଧର୍ମ ଲୋପ ପାଇଯାଇଥିବା ବେଳେ ଓଡ଼ିଶା ବାଦ ଯାଇଥାନ୍ତା କେମିତି ? ତେଣୁ ଭାରତୀୟ ମହାବୋଧି ସୋସାଇଟିର ସାଧାରଣ ସମ୍ପାଦକ ରେୱାଥା ଥେରୋ ଏବଂ ଭୁବନେଶ୍ୱର ମହାବୋଧି ସୋସାଇଟିର ସଭାପତି ଜି. ସଦାତିସ୍‌ସ ଥେରୋଙ୍କ ପ୍ରେରଣାରେ ଓଡ଼ିଆରେ ଏହି ବହି ଛପାଯିବା ଏକାନ୍ତ ଯଥାର୍ଥ ।

ସିଂହଳର ପତ୍ରିକାମାନେ ଧର୍ମପାଳଙ୍କୁ ସମ୍ମାନନୀୟ ସିଂହଳି ଭାବେ ପରିଚିତ କରେଇଛନ୍ତି । କୌଣସି ଭାରତୀୟ ସମ୍ବାଦପତ୍ର ତାଙ୍କୁ ବିଶିଷ୍ଟ ଭାରତୀୟ କହିଥିବା ମୁଁ ଜାଣେ ନାହିଁ । ଅଥଚ୍ ଭାରତରେ ବୁଦ୍ଧଧର୍ମର ପୁନର୍ଜାଗରଣ ପାଇଁ ସେ ଯେତେ କାମ କରିଛନ୍ତି, ତା'ର ତୁଳନା ନାହିଁ । ତାଙ୍କ ଶେଷ ଉଇଲରେ ସେ ଭାରତରେ ପୁନର୍ଜନ୍ମର ଆଶା ପୋଷଣ କରିଛନ୍ତି । ଭାରତ ପ୍ରତି ତାଙ୍କର ଟାଣ ଏତେ ବେଶି ଯେ ସିଏ ତାଙ୍କ ଜନ୍ମଭୂମି ଛାଡ଼ି ସାରନାଥରେ ମରିବାକୁ ପସନ୍ଦ କରିଥିଲେ । ବୁଦ୍ଧଗୟା, ସାରନାଥ, ବାରାଣସୀ, କଲିକତାରେ ବୌଦ୍ଧଧର୍ମର ପୁନଃପ୍ରତିଷ୍ଠା ତାଙ୍କୁ ଯେତିକି ଭାରତୀୟ କରିଚି, ବର୍ମା (ମ୍ୟାନମାର), ଶାୟମ (ଥାଇଲାଣ୍ଡ), ସିଲୋନ (ଶ୍ରୀଲଙ୍କା), ଭାରତ, ଚୀନ, ଜାପାନ, ଆମେରିକା, ଇଂଲଣ୍ଡରେ ବୌଦ୍ଧଧର୍ମର ପ୍ରଚୁର ପ୍ରସାର ତାଙ୍କୁ ସେତିକି ବିଶ୍ୱନାଗରିକ କରିଚି । କିନ୍ତୁ ସେ ତ ଅ+ନାଗରିକ । ପୁଣି ଅଣ+ଆଗାରିକ । ତାଙ୍କର ନା ରାଜ୍ୟ ଅଛି, ନା ଘର । ତାଙ୍କର କାମ ହିଁ ତାଙ୍କର ପରିଚୟ ।

ସେଇ ମହାପୁରୁଷ ମହାନ ଆତ୍ମାଙ୍କଠାରେ ମୁଁ ଶରଣ ନେଉଛି ।

ଦେବୀପ୍ରସନ୍ନ ପଟ୍ଟନାୟକ

(ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ)
ପ୍ରାକ୍ତନ ପ୍ରତିଷ୍ଠାତା ନିର୍ଦ୍ଦେଶକ
ଭାରତୀୟ ଭାଷା ସଂସ୍ଥାନ, ମହୀଶୂର
ସେବା ନିବୃତ୍ତ ଆଡିସନାଲ ସେକ୍ରେଟାରୀ, ଭାରତ ସରକାର

# ସୂଚୀପତ୍ର

| ବିଷୟ | ପୃଷ୍ଠା |
| --- | --- |
| ଉନବିଂଶ ଶତାବ୍ଦୀରେ ସିଂହଳର ସାମାଜିକ ସ୍ଥିତି | ୦୧ |
| ଅନଗାରିକ ଧର୍ମପାଳଙ୍କ ପୂର୍ବଜ ଓ ତାଙ୍କ ଜନ୍ମ ବୃତ୍ତାନ୍ତ | ୦୨ |
| ଡାଭିଡ୍ ହେୱାୱିଥରନାଙ୍କ ଶିକ୍ଷାଲାଭ | ୦୩ |
| ଡାଭିଡ୍‌ଙ୍କ କର୍ମମୟ ଜୀବନର ବୃତ୍ତାନ୍ତ | ୦୫ |
| ଅନଗାରିକ ଧର୍ମପାଳ ଓ ସ୍ୱାମୀ ବିବେକାନନ୍ଦ | ୧୦ |
| ବୁଦ୍ଧଙ୍କଠାରେ ବିଶ୍ୱ ଋଣୀ | ୧୨ |
| ଅନଗାରିକ ଧର୍ମପାଳଙ୍କ ଆମେରିକାରୁ ପ୍ରତ୍ୟାବର୍ତ୍ତନ | ୧୭ |
| ଶେଷ ସମୟ ଉପନୀତ | ୩୩ |
| ପ୍ରଶାନ୍ତ (ଅବିଚଳିତ) ସ୍ମିତହାସ୍ୟ | ୩୩ |
| ମୃତ୍ୟୁ ଘୋଷଣା | ୩୪ |
| ସାଧାରଣ ସଭା | ୩୮ |
| ଧର୍ମପାଳଙ୍କ ଉଇଲ | ୩୯ |
| ଉପସଂହାର | ୩୯ |



# ବୌଦ୍ଧଧର୍ମ ସଂସ୍ଥାପକ ଅନଗାରିକ ଧର୍ମପାଳ

## ଊନବିଂଶ ଶତାବ୍ଦୀରେ ସିଂହଳର ସାମାଜିକ ସ୍ଥିତି :

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀଲଙ୍କାରେ ବୌଦ୍ଧଧର୍ମ ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ରହିଥିଲା । ପର୍ତ୍ତୁଗୀଜ, ଡଚ୍ ଓ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହୋଇ ରହିଥିବା ସେହି ଦ୍ୱୀପର ଅଧିବାସୀମାନଙ୍କୁ ପାରମ୍ପରିକ ସଂସ୍କୃତି ଓ ଧର୍ମଧାରାକୁ ପାଳନ କରିବାକୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡୁଥିଲା । ଖ୍ରୀଷ୍ଟିଆନ୍ ଧର୍ମଯାଜକମାନେ ବହୁ ସଂଖ୍ୟାରେ ସେ ଦ୍ୱୀପରେ ପହଞ୍ଚି ଲୋକମାନଙ୍କୁ ସେମାନେ ବିଶ୍ୱାସ କରୁଥିବା ବୌଦ୍ଧ ଧର୍ମ ବିରୁଦ୍ଧରେ ପ୍ରଚାର କରୁଥିଲେ । ବହୁ ସଂଖ୍ୟାରେ ବିଦ୍ୟାଳୟମାନ ଖୋଲି ପିଲାମାନଙ୍କୁ ଇଂରାଜୀ ଶିକ୍ଷା ଦେବା ସହିତ ବାଇବେଲ ସମ୍ବନ୍ଧୀୟ ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ । ସେମାନଙ୍କର ଜାତି, ଧର୍ମ, ବର୍ଣ୍ଣ, ଶିକ୍ଷା ଓ ସଂସ୍କୃତି ଯୋଗୁଁ ସେମାନେ ଲଜ୍ଜିତ ହେବା ଉଚିତ୍ ବୋଲି ସେମାନଙ୍କୁ ବୁଝାଉଥିଲେ । ଡଚ୍‌ମାନଙ୍କର ଅଧିକୃତ ଅଞ୍ଚଳରେ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ଖ୍ରୀଷ୍ଟଧର୍ମାବଲମ୍ବୀ ବୋଲି ସ୍ୱୀକାର କରିବାକୁ ବାଧ୍ୟ କରାଯାଉଥିଲା । ଇଂରେଜମାନେ ମଧ୍ୟ ୧୮୧୪ ମସିହାରୁ ୭୦ ବର୍ଷ କାଳ ଏହି ପନ୍ଥା ଅନୁସରଣ କରୁଥିଲେ । କର୍ଣ୍ଣେଲ୍ ହେନେରି ଷ୍ଟିଲ ଓଲକଟ୍ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଲଣ୍ଡନ ସ୍ଥିତ ବ୍ରିଟିଶ୍ ଉପନିବେଶ ସମୂହର ସଚିବଙ୍କୁ ଅବଗତ କରାଇ ଏହାର ପରିସମାପ୍ତି ଘଟାଇଥିଲେ । ବୌଦ୍ଧଧର୍ମାବଲମ୍ବୀମାନଙ୍କର ସନ୍ତାନ ଜନ୍ମ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ଚର୍ଚ୍ଚକୁ ନିଆଯାଇ ବାଇବେଲରେ ଥିବା ନାମାନୁସାରେ ସେମାନଙ୍କର ନାମକରଣ କରାଯାଉଥିଲା । ତେଣୁ ଏହାର ପରିଣାମରେ ଅଧିକାଂଶ ସିଂହଳୀଙ୍କୁ ଇଂଲିଶ୍ କିମ୍ବା ପର୍ତ୍ତୁଗୀଜ ନାମ ଓ ସାଙ୍ଗିଆ ଗ୍ରହଣ କରିବାକୁ ପଡୁଥିଲା । ସମୟକ୍ରମେ ସଂଖ୍ୟାଧିକ ସିଂହଳ ବସବାସୀ ନିଜକୁ ବୌଦ୍ଧ ଧର୍ମାବଲମ୍ବୀ ବୋଲି କହିବାକୁ ଭୟ କରୁଥିଲେ । ଗ୍ରାମାଞ୍ଚଳରେ ରହୁଥିବା ଲୋକମାନେ କେବଳ ନିଜ ଧର୍ମ ପାଳନ କରିବାକୁ ସକ୍ଷମ ହେଉଥିଲେ । ଗ୍ରାମାଞ୍ଚଳକୁ ମଧ୍ୟ ଖ୍ରୀଷ୍ଟିଆନ୍ ମିଶନାରୀମାନେ ପ୍ରଚାରକ ପଠାଇ ବୌଦ୍ଧଧର୍ମ ବିରୁଦ୍ଧରେ ଅସତ୍ୟ ଓ ଅପମାନଜନକ ବେତନଭୋଗୀ ପ୍ରଚାର କରୁଥିଲେ । ବୌଦ୍ଧସଂଘ ଗୁଡ଼ିକରେ ଥିବା ଭିକ୍ଷୁମାନେ ନିଜ ଧର୍ମର ନୀତିଗୁଡ଼ିକ ସମ୍ବନ୍ଧରେ ଦୃଢ଼ ନିଶ୍ଚିତ ଥିଲେ ମଧ୍ୟ ଖ୍ରୀଷ୍ଟିଆନ ମିଶ୍‌ନାରୀମାନଙ୍କର ଆକ୍ରମଣାତ୍ମକ ପ୍ରଚାରରୁ ସେମାନଙ୍କୁ ନିବୃତ୍ତ କରାଇପାରୁ ନଥିଲେ । ସିଂହଳରେ ଦୁଇ ହଜାର ବର୍ଷ

ଥିବା ପ୍ରଚଳିତ ଥିବା ବୌଦ୍ଧଧର୍ମ ଏକ ସଂକଟମୟ ସ୍ଥିତିରେ ଗତି କରୁଥିଲା । ଖ୍ରୀଷ୍ଟିଆନ୍ ପାଦ୍ରୀମାନେ ବୌଦ୍ଧଧର୍ମକୁ ଆରବସାଗରରେ ବୁଡ଼ାଇ ଦେଇ ତା'ର ସତ୍ତା ଲୋପ କରିବାକୁ ଉଦ୍ୟମ କରୁଥିଲେ । କିନ୍ତୁ ସିଂହଳର କେତେକ ସ୍ୱାଭିମାନୀ ଓ ବିତ୍ତଶାଳୀ ବୌଦ୍ଧ ପରିବାର ଅଣ୍ଟା ଭିଡ଼ି ବାହାରିବା ଫଳରେ ଅବସ୍ଥାରେ ସାମାନ୍ୟ ପରିବର୍ତ୍ତନ ଘଟିଥିଲା ।

## ଅନଗାରିକ ଧର୍ମପାଳଙ୍କ ପୂର୍ବଜ ଓ ତାଙ୍କ ଜନ୍ମ ବୃତ୍ତାନ୍ତ :

ସିଂହଳରେ ତାଙ୍କର ପୂର୍ବପୁରୁଷମାନେ ଯେଉଁ ବୌଦ୍ଧଧର୍ମର ନୀତି ନିୟମ ଓ ଆଦର୍ଶକୁ ପାଳନ କରି ସୁଖଶାନ୍ତିରେ ଜୀବନଯାପନ କରୁଥିଲେ, ସେହି ଧର୍ମର ସୁରକ୍ଷା ପାଇଁ ଆଗେଇ ଆସିଥିଲେ ଦକ୍ଷିଣ ସିଂହଳର ମତରାର ଅଧିବାସୀ ହେୱାୱିଥରନା ଡିଙ୍ଗିରି ଆପୁହାମି (Hewawitharana Dingiri Appuhamy) । ଅନଗାରିକ ଧର୍ମପାଳ ହେଉଛନ୍ତି ହେୱାୱିଥରନା ଡିଙ୍ଗିରି ଆପୁହାମିଙ୍କ ନାତି ।

ହେୱାୱିଥରନା ଡିଙ୍ଗିରି ଆପୁହାମି (Hewawitharana Dingiri Appuhamy) ଏକ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଦୁଇଟି ପୁଅ ଥିଲେ ଏବଂ ଉଭୟେ ବୌଦ୍ଧଧର୍ମ ପ୍ରତି ନିଷ୍ଠା ରଖିଥିଲେ । ଜଣେ ପୁତ୍ର ସଂସାର ତ୍ୟାଗକରି ବୌଦ୍ଧ ଭିକ୍ଷୁ ହୋଇଥିଲେ ଏବଂ ସେ ଥିଲେ ହିତାତୀୟ ଅଥାଦଶି ଥେରା (Hittatiya Atthadassi Thera) ନାମରେ ପରିଚିତ । ସେ ହିତାତୀୟ ରାଜା ମହାବିହାର (Hittatiya Raja Mahavihara)ଙ୍କର ଉତ୍ତରାଧିକାରୀ । ଅନ୍ୟତମ ସନ୍ତାନ ଡନ୍ କାରୋଲିସ୍ ହେୱାୱିଥରନା (Don Carolis Hewawithrana) କଲମ୍ବୋ ସହରକୁ ଗୁଳିଯାଇ ସେଠାରେ ପେଟା ଅଞ୍ଚଳରେ ଏକ ଆସବାବ ତିଆରି କାରଖାନା ସ୍ଥାପନ କରିଥିଲେ ଏବଂ ଆଣ୍ଡ୍ରିସ୍ ପେରା ଧର୍ମଗୁଣୱର୍ଦନେ (Andris Perera Dharmagunawardene) ନାମକ ଜଣେ ପ୍ରତିଷ୍ଠିତ ବ୍ୟବସାୟୀଙ୍କ ଝିଅ ମଲ୍ଲିକାଙ୍କୁ ବିବାହ କରିଥିଲେ । ଆଣ୍ଡ୍ରିସ୍ ପେରା ଧର୍ମଗୁଣୱର୍ଦନେ (Andris Perera Dharmagunawardene) ସିଂହଳରେ ପ୍ରଥମ ବୌଦ୍ଧ ସନ୍ନ୍ୟାସୀମାନଙ୍କ ଶିକ୍ଷାନୁଷ୍ଠାନ (ମହାବିଦ୍ୟାଳୟ) ପାଇଁ ଜମି ଦାନ କରିଥିଲେ । ଏହି ମହାବିଦ୍ୟାଳୟରେ ବର୍ମା, ଶ୍ୟାମ, ଭାରତ, ଜାପାନ, ଗୁଇନା ପ୍ରଭୃତି ଦେଶମାନଙ୍କରୁ ବୌଦ୍ଧଭିକ୍ଷୁମାନେ ଆସି ଜ୍ଞାନ ଚର୍ଚ୍ଚାରେ ଲିପ୍ତ ଥିଲେ ।

ଡନ୍ କାରୋଲିସ୍ (Don Carolis) ଏବଂ ତାଙ୍କ ପତ୍ନୀ ମଲ୍ଲିକା (Mallika)ଙ୍କର ୧୭ ସେପ୍‌ଟେମ୍ବର ୧୮୬୪ ମସିହାରେ ଏକ ପୁତ୍ର ସନ୍ତାନ ଜନ୍ମଗ୍ରହଣ କରିଥିଲା ।

ମୟକ୍ରମେ ସମଗ୍ର ପୃଥିବୀରେ ଅନଗାରିକ ଧର୍ମପାଳ ଭାବେ ପରିଚିତ ହୋଇଥିଲେ । ଜନ୍ମବେଳେ ତାଙ୍କ ନାମକରଣ କରାଯାଇଥିଲା ଡାଭିଡ୍ ହେୱାୱିଥରନା (David Hewawithrana) । ସେ ବାଲ୍ୟକାଳରୁ ପିତା ମାତାଙ୍କ ଦ୍ୱାରା ଅତି ଆଦରରେ ଲାଳିତପାଳିତ ହୋଇ ପ୍ରତିଦିନ ସକାଳ ସଂଜରେ ତଥାଗତ ବୁଦ୍ଧଙ୍କୁ ପ୍ରାର୍ଥନା କରୁଥିଲେ ଏବଂ ତାଙ୍କର ଆଶିଷ ଭିକ୍ଷା କରୁଥିଲେ ।

## ଡାଭିଡ୍ ହେୱାୱିଥରନାଙ୍କ ଶିକ୍ଷାଲାଭ :

ଡାଭିଡ୍ ହେୱାୱିଥରନାଙ୍କୁ ପାଞ୍ଚ ବର୍ଷ ବୟସ ହୋଇଥିବାବେଳେ ତାଙ୍କ ପିତାମାତା ତାଙ୍କୁ ଏକ ବାଳିକା ବିଦ୍ୟାଳୟରେ ଶିକ୍ଷାଲାଭ କରିବାକୁ ପଠାଇଲେ । ସେହି ବିଦ୍ୟାଳୟରେ ବହୁ ସଂଖ୍ୟକ ବର୍ଘର (Burghers) ପିଲା (ସିଂହଳୀ ଓ ଡଚ୍ ବିବାହରୁ ଉତ୍ପନ୍ନ ସନ୍ତାନସନ୍ତତି) ପଢୁଥିଲେ । ଭିନ୍ନ ଏକ ଧର୍ମ ଖ୍ରୀଷ୍ଟଧର୍ମ ସିଂହଳରେ ଅଛି, ସେକଥା ଜାଣିବାକୁ ପାଇଲେ । ସେ ଦେଖିଲେ ତାଙ୍କ ସ୍କୁଲର ଶିକ୍ଷକ-ଶିକ୍ଷୟିତ୍ରୀମାନେ ଖ୍ରୀଷ୍ଟଧର୍ମାବଲମ୍ବୀ ଓ ଯୀଶୁଖ୍ରୀଷ୍ଟଙ୍କ ପ୍ରଚ୍ଚରିତ ଦର୍ଶନରେ ବିଶ୍ୱାସୀ । ସେମାନେ ବୌଦ୍ଧଧର୍ମକୁ ଘୃଣା ଚକ୍ଷୁରେ ଦେଖୁଛନ୍ତି ଓ ତାହା ବିଲୋପ କରିବାକୁ ସମସ୍ତ ଉପାୟ କରୁଛନ୍ତି ।

ଡାଭିଡ୍‌ଙ୍କୁ ଯେତେବେଳେ ଛଅ ବର୍ଷ ବୟସ, ସେ ପେଟା ସ୍ଥିତ କ୍ୟାଥୋଲିକ୍ ସ୍କୁଲ (ପରେ ସେଣ୍ଟମାରୀ ସ୍କୁଲ ନାମରେ ନାମିତ)ରେ ଯୋଗଦେଲେ ଓ ସେହିଠାରେ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହେଲା । ଏହି ସ୍କୁଲରେ ପଢୁଥିଲାବେଳେ ଥରେ ତାଙ୍କୁ ବିଶପ୍ ହିଲାରିଆନ୍ ସିଲାନି (Hilarion Sillani)ଙ୍କ ମୁଦ୍ରିକାକୁ ଆଣ୍ଠୁମାଡ଼ି ଚୁମ୍ବନ କରିବାକୁ କୁହାଯାଇଥିଲା ଏବଂ ସେ ମୁଦିକୁ ଚୁମ୍ବନ କଲେ, କିନ୍ତୁ ବୁଝି ନଥିଲେ ଏହାର ଅର୍ଥ କ'ଣ ? ସେଣ୍ଟମାରୀ ସ୍କୁଲରେ ଦୁଇ ବର୍ଷ ଅଧ୍ୟୟନ ପରେ ଡାଭିଡ୍ ଗୋଟିଏ ସିଂହଳୀ ଘରୋଇ ଶିକ୍ଷାନୁଷ୍ଠାନରେ ଯୋଗଦେଲେ । ସେଠାରେ ସିଂହଳୀ ଭାଷାରେ ଲିଖିତ ପୁସ୍ତକ ଓ ସିଂହଳୀ ସାହିତ୍ୟରେ ଅଧ୍ୟୟନ କଲେ ଏବଂ ସିଂହଳୀ ଭାଷା ପ୍ରତି ତାଙ୍କର ମମତା ବଢ଼ିଲା । ତାଙ୍କୁ ଯେତେବେଳେ ୯ ବର୍ଷ ବୟସ ତାଙ୍କ ବାପା କୋଟାହେନା ମନ୍ଦିର ପ୍ରାଙ୍ଗଣରେ ତାଙ୍କୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେଇଥିଲେ ଏବଂ ତାଙ୍କୁ ଉପଦେଶ ଦେଇଥିଲେ ଯେ ଜୀବନରେ ଯାହା ସେ ପାଇବେ ଅଳ୍ପରେ ସନ୍ତୁଷ୍ଟ ହେବେ, ଅଳ୍ପ ଆହାର କରିବେ, ଅଳ୍ପ ଶୟନ କରିବେ ଇତ୍ୟାଦି । ପିତାଙ୍କର ଏହି ଉପଦେଶକୁ ସେ ସାରାଜୀବନ ପାଳନ କରିଥିଲେ ।

ଏହାପରେ ଡାଭିଡ୍‌ଙ୍କୁ ଦଶ ବର୍ଷ ବୟସ ହୋଇଥିବାବେଳେ ସେ ସେଣ୍ଟ ବେନେଡିକ୍ଟ ଇନ୍‌ଷ୍ଟିଚ୍ୟୁଟ୍, କୋଟାହେନା, କଲମ୍ବୋରେ ଦୁଇବର୍ଷ ଅଧ୍ୟୟନ କଲେ ।

ସେହି ସ୍କୁଲରେ ପଢୁଥିବାବେଳେ ତାଙ୍କ ଶିକ୍ଷକମାନଙ୍କ ଭିତରେ ଥିଲେ ବ୍ରଦର ଅଗଷ୍ଟ, ଡାନିଏଲ୍, ଜୋଶୁଆ ଓ କ୍ୟାସିଅନ ପ୍ରଭୃତି । ସେହି ସ୍କୁଲରେ ପ୍ରତ୍ୟେକ ଅଧଘଣ୍ଟାରେ ଯୀଶୁଖ୍ରୀଷ୍ଟଙ୍କ ମା' ଭର୍ଜିନ ମେରୀଙ୍କ ପ୍ରଶଂସାରେ ଛାତ୍ରମାନଙ୍କୁ ପ୍ରାର୍ଥନା କରିବାକୁ ପଡୁଥିଲା । ଏହି ବିଦ୍ୟାଳୟରେ ତାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ବାଧ୍ୟ କରାଯାଇଥିଲା । କିନ୍ତୁ ଡାଭିଡ୍ ସେହି ପ୍ରସ୍ତାବକୁ ଦୃଢ଼ତାର ସହିତ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ମେ' ୧୮୭୬ ମସିହାରେ ସେଣ୍ଟ ବେନେଡିକ୍ଟ ସ୍କୁଲର କର୍ମକର୍ତ୍ତାମାନେ ତାଙ୍କୁ ସେ ସ୍କୁଲ ଛାଡ଼ି ଯିବାପାଇଁ ଆଦେଶ ଦେଲେ ।

ତା'ପରେ ଡାଭିଡ୍ କଲମ୍ବୋ ଠାରୁ ୭ ମାଇଲ୍ ଦୂରରେ ଅବସ୍ଥିତ ଖ୍ରୀଷ୍ଟିୟାନ ମିଶନାରୀ ସ୍କୁଲ (ସେଣ୍ଟଥମାସ), କୋଟେରେ ଅଧ୍ୟୟନ କଲେ । ଏହିଠାରେ ସେ ସମ୍ମାନସ୍ପଦ ମିଗେଟ୍ଟୁୱାତେ ଗୁନାନନ୍ଦ ନାୟକେ ମହା ଥେରୋ (Migettuwatte Gunananda Nayake Maha Thero) ଓ ହିକ୍କାଦୁୱେ ସିରି ସମୁମଙ୍ଗଲା ମହାନାୟକେ ଥେରୋ (Hikkaduwe Siri Sumanagala Maha Nayake Thero)ଙ୍କ ପାଖରେ ସିଂହଳୀ ଓ ବୌଦ୍ଧଧର୍ମ ପାଠ ଅଧ୍ୟୟନ କରିଥିଲେ ।

୧୮୭୮ ମସିହାରେ ଉତ୍ତର କଲମ୍ବୋର ସେଣ୍ଟ୍ ଥୋମାସ୍ କଲିଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲେ । ଏହିଠାରେ ୱାର୍ଡେନ୍ ମିଲର୍ (Warden Miller)ଙ୍କ କଠୋର ନୀତି ଯୋଗୁଁ ଛାତ୍ରମାନେ ଭୟଭୀତ ହୋଇ ଚଳୁଥିଲେ । ବୁଦ୍ଧଙ୍କ ପବିତ୍ର ଜନ୍ମଦିବସ ପାଳନ କରିବାକୁ ଡାଭିଡ୍ ଗୋଟିଏ ଦିନ ସ୍କୁଲରୁ ଛୁଟି ମାଗିବାରୁ ଛୁଟି ଦିଆଯିବ ନାହିଁ ବୋଲି ତାଙ୍କୁ କହିଥିଲେ । ଏହା ଶୁଣି ଡାଭିଡ୍ ତାଙ୍କର ଛତା ଓ ପୁସ୍ତକ ପ୍ରଭୃତି ଧରି ସ୍କୁଲ ପରିସରରୁ ବାହାରକୁ ପଳାଇ ଆସୁଥିବା ବେଳେ ୱାର୍ଡେନ୍ ମିଲର୍ ତାଙ୍କୁ ବେତରେ ପିଟିଥିଲେ । କିନ୍ତୁ ଏଥିରେ ସେ ଭୟଭୀତ ହୋଇନଥିଲେ ।

ଡାଭିଡ୍ଙ୍କର କଲମ୍ବୋର ଭିଦ୍ୟୋଦୟ ବୌଦ୍ଧ ଶିକ୍ଷାପୀଠ ପିରିଭେନା ଠାରେ କର୍ଣ୍ଣେଲ ହେନେରି ଷ୍ଟିଲ ଓଲକଟ (Col. Henry Steel Olcott) ଏବଂ ଋଷିଆର ମହିଳା ମାଡାମ୍ ବ୍ଲାଭସ୍କି (Madam Blavatsky)ଙ୍କ ସହିତ ସାକ୍ଷାତ ହୋଇଥିଲା । ବିଶେଷତଃ ଧର୍ମ ଦୃଷ୍ଟିକୋଣରୁ ଏହି ସାକ୍ଷାତ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ତାଙ୍କ ଜୀବନର ଗତିପଥ ବଦଳାଇ ଦେଇଥିଲା । ତନ ଡାଭିଡ ୧୮୮୩ ମସିହାରେ ଏହି ସ୍କୁଲ ପରିତ୍ୟାଗ କରିଥିଲେ ଏବଂ ତାଙ୍କର ପାରମ୍ପରିକ ଶିକ୍ଷାର ପରିସମାପ୍ତି ଘଟିଥିଲା ।

## ଡାଭିଡ୍‌ଙ୍କ କର୍ମମୟ ଜୀବନର ବୃତ୍ତାନ୍ତ :

ଫେବୃଆରୀ ୧୮୮୬ ମସିହାରେ କର୍ଣ୍ଣେଲ୍ ଓଲକଟ (Col. Olcott) ଓ ସି. ଡବ୍ଲୁ. ଲିଡ଼ବିଟର (C. W. Leadbeater) ବୌଦ୍ଧଧର୍ମ ଶିକ୍ଷାପାଇଁ ଆବଶ୍ୟକ ହେଉଥିବା ଅର୍ଥ ସଂଗ୍ରହ ନିମନ୍ତେ କଲମ୍ବୋରେ ପହଞ୍ଚିଲେ । ସେହି ସମୟରେ ଡାଭିଡ୍ ହେୱାୱିଥରନା ଶିକ୍ଷା ବିଭାଗରେ କନିଷ୍ଠ କିରାଣୀ ଭାବରେ ଚାକିରି କରୁଥିଲେ । କର୍ଣ୍ଣେଲ୍ ଓଲକଟ୍ ଓ ଲିଡ଼ବିଟର୍ ଜଣେ ସିଂହଳୀ ଭାଷା ଜାଣିଥିବା ବ୍ୟକ୍ତି ଯିଏ କି ତାଙ୍କ କଥାଗୁଡ଼ିକୁ ସିଂହଳୀ ଭାଷାରେ ଅନୁବାଦ କରି ସିଂହଳୀମାନଙ୍କୁ ବୁଝାଇପାରିବ, ସେହିଭଳି ବ୍ୟକ୍ତିଙ୍କୁ ଖୋଜୁଥିଲେ । ଦୁହିଁଙ୍କ ବହୁ ପ୍ରଚେଷ୍ଟା ସତ୍ତ୍ୱେ ଏ କାମ କରିବାକୁ କେହି ଆଗଭର ନ ହେବାରୁ ଧର୍ମପାଳ ପ୍ରଥମେ ଶିକ୍ଷା ବିଭାଗ ନିର୍ଦ୍ଦେଶକଙ୍କଠାରୁ ତିନିମାସ ଛୁଟି ନେଇ ଏହି କାର୍ଯ୍ୟ କରିବାକୁ ଚାହିଁଥିଲେ । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ତେଣୁ ସେ ଚାକିରିରୁ ଇସ୍ତଫା ପ୍ରଦାନ କରି ଏହି ଦୁଇ ଇଂରେଜ ବ୍ୟକ୍ତିଙ୍କ ସଙ୍ଗରେ ତାଙ୍କର ଦ୍ୱିମହଲା ବିଶିଷ୍ଟ ମଟର ଗାଡ଼ିରେ ସାରା ସିଂହଳର ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ବୁଲି ସେଠାରେ ସେ ବୌଦ୍ଧମାନଙ୍କ ଭିତରେ ବିଦେଶୀ ଅପସଂସ୍କୃତି କିଭଳି କାୟାବିସ୍ତାର କରିଛି, ତାହା ଦେଖିବାକୁ ପାଇଲେ । ଖ୍ରୀଷ୍ଟିଆନ୍ ମିଶନାରୀମାନେ ସେମାନଙ୍କ ପ୍ରଚାର ଦ୍ୱାରା ସିଂହଳର ଜାତୀୟ ଚରିତ୍ରକୁ କିଭଳି କଳୁଷିତ କରିବାରେ ଲାଗିଛନ୍ତି, ତାହା ଦେଖି ସେ ବ୍ୟଥିତ ହେଲେ । ଧର୍ମପାଳ ସ୍ଥାୟୀ ସରକାରୀ ଚାକିରି ପାଇଥିଲେ । ମାତ୍ର ତାହା ପରିତ୍ୟାଗ କରି ସେ ବୌଦ୍ଧଧର୍ମ ପ୍ରଚାରରେ ନିଜକୁ ନିୟୋଜିତ କରିବାର ନିଷ୍ପତ୍ତି ନେଇ ତାଙ୍କ ପିତା ଓ ଶିକ୍ଷା ବିଭାଗର ଅଧିକାରୀଙ୍କ ପରାମର୍ଶକୁ ଗ୍ରହଣ ନକରି ବୌଦ୍ଧଧର୍ମ ପ୍ରଚାର ପାଇଁ ନିଜ ଜୀବନକୁ ଉତ୍ସର୍ଗ କଲେ । ସେତେବେଳେ ସେହି ଦ୍ୱୀପରେ ବ୍ରିଟିଶ ଔପନିବେଶିକ ଶାସନ ଥିଲେ ମଧ୍ୟ କର୍ଣ୍ଣେଲ ଓଲକଟ୍‌ଙ୍କ ନେତୃତ୍ୱରେ ଥିଓସୋଫିକାଲ ସୋସାଇଟି ବୌଦ୍ଧଧର୍ମର ଉନ୍ନତି ପାଇଁ କାର୍ଯ୍ୟ ଆରମ୍ଭ କରିଥିଲା ।

ଏହି ସମୟରେ ଧର୍ମପାଳ ଥିଓସୋଫିକାଲ ଆନ୍ଦୋଳନ ସମ୍ପର୍କରେ ଅଧ୍ୟୟନ କରିବା ପାଇଁ ମାଡାମ୍ ବ୍ଲାଭସ୍କିଙ୍କ ସହ ଦକ୍ଷିଣ ଭାରତର ଆଡ୍ୟାର ପରିଦର୍ଶନ କରିଥିଲେ । ୧୮୮୭ ମସିହାରେ ଧର୍ମପାଳ ଜାପାନ ସମ୍ବନ୍ଧରେ ଏକ ପ୍ରବନ୍ଧ 'ଫର୍ଟନାଇଟଲି ରିଭ୍ୟୁ' ପତ୍ରିକାରୁ ପଢ଼ି ସେ ଦେଶକୁ ଯିବାକୁ ମନସ୍ଥ କରିଥିଲେ ଏବଂ ୧୮୮୯ ଖ୍ରୀଷ୍ଟାବ୍ଦରେ ତାଙ୍କର ଆଶା ପୂର୍ଣ୍ଣ ହୋଇପାରିଥିଲା । ଜାପାନୀ ଲୋକମାନେ ତାଙ୍କଠାରୁ କର୍ଣ୍ଣେଲ୍ ଓଲକଟ୍‌ଙ୍କର ବୌଦ୍ଧଧର୍ମ ପ୍ରତି ଅନୁରକ୍ତି ବିଷୟ ଶୁଣି ତାଙ୍କୁ ଜାପାନ ପରିଭ୍ରମଣରେ ଯିବାକୁ ନିମନ୍ତ୍ରଣ କରିଥିଲେ । ସେ 'ଏସିଆର ଆଲୋକ'ର ପ୍ରଖ୍ୟାତ ଲେଖକ ସାର୍ ଏଡ଼ୱିନ ଆର୍‌ନୋଲ୍‌ଡ (Sir Edwin Arnold)ଙ୍କ ଲଣ୍ଡନରେ

ଟେଲିଗ୍ରାଫ୍ ପାଇଁ ପ୍ରକାଶିତ କେତୋଟି ସନ୍ଦର୍ଭ ଅଧ୍ୟୟନ କରି ବୁଦ୍ଧଗୟା ଶ୍ରୀ ମହାବୋଧି ମନ୍ଦିରର ଶୋଚନୀୟ ଦୂରବସ୍ଥା ସମ୍ପର୍କରେ ଅବଗତ ହେଲେ । ଏହି ସନ୍ଦର୍ଭଗୁଡ଼ିକରେ ବର୍ଣ୍ଣିତ ବିଷୟବସ୍ତୁ ତାଙ୍କୁ ବିଚଳିତ କରିଥିଲା । ସେ ମଧ୍ୟ ତାଙ୍କର ଇଂରାଜୀ ଖ୍ରୀଷ୍ଟିୟାନ୍ ନାଁ ଡନ ଡାଭିଡ ହେୱାୱିଥରନାକୁ ଧର୍ମପାଳ ହେୱାୱିଥରନାକୁ (ଧର୍ମର ଅଭିଭାବକ) ପରିବର୍ତ୍ତନ କରିଥିଲେ । ସରକାରୀ ଚାକିରିରୁ ଅବ୍ୟାହତି ନେଲାପରେ ସେ ଥିଓସୋଫିକାଲ ସୋସାଇଟିର ବୌଦ୍ଧବିଭାଗର (ବି.ଟି.ଏସ୍)ର ସାଧାରଣ ସଂପାଦକ ଦାୟିତ୍ୱ ଗ୍ରହଣକରି ଏଥିସହ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ରହିଲେ ।

ସେତେବେଳେ ସେ ମଧ୍ୟ ବି.ଟି.ଏସ୍ ଆନୁକୂଲ୍ୟରେ ପ୍ରକାଶିତ ସମ୍ବାଦପତ୍ର 'ସନ୍ଦରେସା' (ଚନ୍ଦ୍ରାଲୋକ) ବୌଦ୍ଧ ଛାପାଖାନା, ବୌଦ୍ଧ ବିଦ୍ୟାଳୟଗୁଡ଼ିକର ପରିଚାଳନା ଦାୟିତ୍ୱରେ ରହିଲେ ।

ଇଂରେଜୀ ଔପନିବେଶିକ ଶାସନରେ ବୌଦ୍ଧଧର୍ମାବଲମ୍ବୀମାନଙ୍କର ସ୍ୱାର୍ଥ ସୁରକ୍ଷା ନିମନ୍ତେ ଲଢ଼େଇ କରିବା ପାଇଁ ସେ ବୁଦ୍ଧିଷ୍ଟ ଡିଫେନ୍‌ସ କମିଟି ଗଠନ କରିଥିଲେ । ମାର୍ଚ୍ଚ ୧୮୮୬ରୁ ୧୮୯୦ ପର୍ଯ୍ୟନ୍ତ ସେ ଏହାର ସହକାରୀ ସଂପାଦକ ଥିଲେ ।

୧୮୮୮ ମସିହାରେ ସେ 'ବୁଦ୍ଧିଷ୍ଟ' ନାମରେ ଗୋଟିଏ ସମ୍ବାଦପତ୍ର ପ୍ରକାଶ କଲେ ଓ ମିଷ୍ଟର ଲିଡ଼ବିଟର (Mr. Leadbeater) ଏହାର ସଂପାଦକ ରହିଲେ । ଡିସେମ୍ବର ୧୮୯୦ ମସିହାରେ ଧର୍ମପାଳ ସେତେବେଳେ ସିଲୋନ (ବର୍ତ୍ତମାନ ଶ୍ରୀଲଙ୍କା)ରୁ ଜାପାନୀ ବୌଦ୍ଧଭିକ୍ଷୁ କୋଜେନ୍ ଗୁନରଥ୍ନ (Kozen Gunarathna)ଙ୍କ ସହ ଆଡ୍ୟାର ମହାଅଧିବେଶନରେ ଯୋଗଦାନ କରିବା ନିମନ୍ତେ ଯାତ୍ରା କଲେ ଏବଂ ଅଧିବେଶନ ଶେଷ ହେବାପରେ ସେ ଦୁହେଁ ଜାନୁୟାରୀ ୧୮୯୧ ମସିହାରେ ତୀର୍ଥ ଭ୍ରମଣରେ ଇସିପଥନ ମୃଗବିହାର, ସାରନାଥ ଓ ତା'ପରେ ବୁଦ୍ଧଗୟା ପରିଦର୍ଶନରେ ଯାଇଥିଲେ ।

ପ୍ରଥମଥର ପାଇଁ ଜାନୁୟାରୀ ୨୨ରେ ଧର୍ମପାଳ ବୁଦ୍ଧଗୟା ମନ୍ଦିରକୁ ଓ ମହାବୋଧିଦ୍ରୁମ ପରିଦର୍ଶନ କଲେ । ଏହିଠାରେ ରାଜପୁତ୍ର ସିଦ୍ଧାର୍ଥ ବୁଦ୍ଧତ୍ୱ ଲାଭ କରିଥିଲେ । ଏହା ତାଙ୍କ ଜୀବନରେ ଏକ ବଡ଼ ନିର୍ଣ୍ଣାୟକ ମୁହୂର୍ତ୍ତ ଥିଲା ।

ସେ ପୂର୍ବରୁ ଏହି ମନ୍ଦିରର ଶୋଚନୀୟ ଅବସ୍ଥା ସମ୍ପର୍କରେ ପଢ଼ିଥିଲେ ଓ ବର୍ତ୍ତମାନ ନିଜ ଆଖିରେ ସେହି ପୁଣ୍ୟପୀଠର ଏହି ଦୂରାବସ୍ଥା ଦେଖିଲେ – ଏହାପରେ ସେ ନିଷ୍ପତ୍ତି ନେଲେ ଯେ ଏହି ପବିତ୍ର ମନ୍ଦିରର ପୁନରୁଦ୍ଧାର ଓ ସଂରକ୍ଷଣ ପାଇଁ ସେ କାର୍ଯ୍ୟ କରିବେ ଓ ଯେଉଁ ଦେଶରେ ପ୍ରଥମେ ବୌଦ୍ଧଧର୍ମ ଜନ୍ମଲାଭ କରିଥିଲା, ସେହି ଦେଶରେ ଏହାକୁ ପୁନର୍ଜୀବନ ଦେବାପାଇଁ ଉଦ୍ୟମ କରିବେ ।

ତାଙ୍କ ଡାଏରୀରୁ ନିମ୍ନୋକ୍ତ କେତୋଟି ଧାଡ଼ି ପଢ଼ିଲେ ଆମେ ଜାଣିପାରିବା ସେହି ମନ୍ଦିରର ଅବହେଳିତ ଅବସ୍ଥା ଦେଖି ତାଙ୍କ ମନରେ ଏହାକୁ ପୁନରୁଦ୍ଧାର କରିବାପାଇଁ କେମିତି ଏକ ଆଧ୍ୟାତ୍ମିକ ପିପାସା ଜାଗ୍ରତ ହେଲା ।

"ଯେଉଁ ମୁହୂର୍ତ୍ତରେ ମୁଁ ସେହି ବଜ୍ରାସନ (ହୀରାପୀଠ) ମୋର ମସ୍ତକରେ ସ୍ପର୍ଶ କଲି, ହଠାତ୍ ଏକ ଚେତନା ମୋର ମନ ଭିତରେ ଉଦ୍ରେକ ହେଲା । ଏହା ମୋତେ ବାଧ୍ୟକଲା ମୁଁ ଏହିଠାରେ ରହିବି ଓ ଏହି ପୁଣ୍ୟସ୍ଥଳୀକୁ ଅବହେଳିତ ଅବସ୍ଥାରୁ ପୁନରୁଦ୍ଧାର କରିବାକୁ ନିଜକୁ ସମର୍ପଣ କରିବି । ଏହି ପୁଣ୍ୟସ୍ଥଳୀ ସାରା ବିଶ୍ୱରେ ଅତୁଳନୀୟ । ଏହି ବୋଧିଦ୍ରୁମ ତଳେ ରାଜପୁତ୍ର ଶାକ୍ୟସିଂହ (Sakya Singhe) ଜ୍ଞାନପ୍ରାପ୍ତ ହୋଇଥିଲେ ।"

ବୁଦ୍ଧଗୟା ମନ୍ଦିର ସମ୍ପର୍କରେ ଅନୁଧ୍ୟାନ କରିବାପାଇଁ ସେ ମାର୍ଚ୍ଚ ପର୍ଯ୍ୟନ୍ତ ବୁଦ୍ଧଗୟା ଠାରେ ଅବସ୍ଥାନ କଲେ । ତା'ପରେ କଲିକତା ଯାହାକି ସେତେବେଳେ ଦେଶର ବାଣିଜ୍ୟକେନ୍ଦ୍ର ଥିଲା, ସେଠାରୁ ରେଙ୍ଗୁନ୍ ଯାତ୍ରା କଲେ । କଲିକତାର ବାବୁ ନୀଳକମଲ ମୁଖାର୍ଜୀଙ୍କ ଦ୍ୱାରା ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ଓ ତାଙ୍କର ରହଣି ସମୟରେ ସମସ୍ତ ପ୍ରକାର ସୁବିଧା ଯୋଗାଇ ଦିଆଯାଇଥିଲା । କଲିକତାରେ ରହିବା ସମୟରେ ଧର୍ମପାଳ ନିଷ୍ପତ୍ତି ନେଲେ ଯେ କଲିକତାକୁ ତାଙ୍କର ପ୍ରଥମ କର୍ମସ୍ଥଳୀ ଭାବରେ ଗ୍ରହଣ କରିବେ ।

ବର୍ମାର ବୌଦ୍ଧନେତାମାନଙ୍କୁ ସେ ବୁଦ୍ଧଗୟାର ଶୋଚନୀୟ ଅବସ୍ଥା ସମ୍ପର୍କରେ ଅବଗତ କଲେ ଓ ତାଙ୍କର ଭବିଷ୍ୟତ ଯୋଜନାଗୁଡ଼ିକୁ ଚୂଡ଼ାନ୍ତ କରିବାପାଇଁ ଦୃଢ଼ନିଷ୍ପତ୍ତି ନେଇ ସେ କଲମ୍ବୋ ଫେରିଲେ ।

ସେ ମଇ ଏକତିରିଶ, ୧୯୮୧ ମସିହାରେ ବୁଦ୍ଧଗୟା, ମହାବୋଧି ସୋସାଇଟି ସ୍ଥାପନ କଲେ ଓ ମହାମାନ୍ୟ ହିକ୍କାଦୁୱେ ସିରି ସୁମଙ୍ଗଳା ମହାନାୟକେ ଥେରୋ, ଏହାର ପ୍ରଥମ ସଭାପତି ରହିଲେ ।

ନିମ୍ନପ୍ରକାରେ ଏହି ସୋସାଇଟି ଗଠନ କରାଗଲା ।

ବୁଦ୍ଧଗୟା ମହାବୋଧି ସୋସାଇଟି

(କଲମ୍ବୋରେ ପ୍ରତିଷ୍ଠା କରାଗଲା)

ମଇ ୩୧, ୧୮୯୧

**ଲକ୍ଷ୍ୟ**-ବୌଦ୍ଧସ୍ତୁପ ଓ ବୌଦ୍ଧ ମହାବିଦ୍ୟାଳୟର ସ୍ଥାପନ, ଗ୍ଭଇନା, ଜାପାନ, ଶ୍ୟାମ, କାମ୍ବୋଡ଼ିଆ, ବର୍ମା, ସିଲୋନ, ଚିଟ୍ଟାଗଙ୍ଗ, ନେପାଳ, ତିବ୍ବତ, ଅରକନ ପରି ବୌଦ୍ଧ ଧର୍ମ ଦେଶର ବୌଦ୍ଧଭିକ୍ଷୁ କର୍ମଗ୍ଭରୀମାନଙ୍କୁ ବୁଦ୍ଧଗୟାରେ ନିୟୋଜନ ।

ଇଂରାଜୀ ଓ ଭାରତୀୟ ଭାଷାରେ ବୌଦ୍ଧସାହିତ୍ୟ ପ୍ରକାଶନ ।

ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସଂପାଦନ ନିମନ୍ତେ ଏକ ଲକ୍ଷ ଟଙ୍କା ଆବଶ୍ୟକ ହୋଇଥିଲା । ପୃଥିବୀର ସମସ୍ତ ବୌଦ୍ଧମାନେ ଏଥିନିମନ୍ତେ ମୁକ୍ତହସ୍ତରେ ଦାନ କରିବାକୁ ଅନୁରୋଧ କରାଯାଇଥିଲା ।

## ସମ୍ବିଧାନ

*ସଭାପତି*

**ପ୍ରଧାନ ନାୟକ ଏଚ୍ ସୁମଙ୍ଗଳ ମହା ଥେରା**

*ନିର୍ଦ୍ଦେଶକ ଓ ମୁଖ୍ୟ ଉପଦେଷ୍ଟା*

**କର୍ଣ୍ଣେଲ ଏଚ୍. ଏସ୍. ଓଲକଟ**

*ସାଧାରଣ ସଂପାଦକ*

**ଏଚ୍. ଧରମପାଳ**

## ପ୍ରତିନିଧି

ଶ୍ୟାମ

**ମହାମାନ୍ୟ ରଜା ଚନ୍ଦ୍ରଧର ଚୁଡାତ୍‌ଧର**

**ଶ୍ୟାମର ରାଜା, ବ୍ୟାଙ୍ଗକକ୍, ଶ୍ୟାମ**

*ଜାପାନ୍*

**ରେଭ ରେଭେରେଣ୍ଡ ସାକୁ ୟୁନିସିଓ**

ସିଅକୋ-କୁଜି, ମେଜିରୋ, ଟୋକିଓ, ଜାପାନ

**ବୌଦ୍ଧ ସଂପ୍ରଦାୟଙ୍କ କମିଟି**

ୟୋକଜି, ତେରମାଟି ଦୋରି, ସୋଜୋ ସଗାରୁ, କ୍ୟୋଟୋ

**ଏସ୍. ହୋରିୟୁଚି, ଇସଙ୍କୁ**

ସଂପାଦକ, ଇଣ୍ଡୋ-ବୁସେକି କୋଫକୁ ସୋସାଇଟି, ଅଟାଗୋ, ଶିତ, ଟୋକିଓ ।

*ସିଲୋନ*

**ଜି. ପି. ୱିରଶେଖରା**
୬୧, ମାଲିବାନ୍ ଷ୍ଟ୍ରୀଟ୍, କଲମ୍ବୋ

*ବର୍ମା*

**ମଙ୍ଗ ପୋ ମହିନ୍, କେ.ଏସ୍.ଏମ୍.**
ଅବୈତନିକ ସଂପାଦକ, ମହାବୋଧି ସୋସାଇଟି
୩୮, କମିଶନରସ ରୋଡ଼, ରେଙ୍ଗୁନ

*କଲିକତା*

**ସଂପାଦକ, କଲିକତା ମହାବୋଧି ସୋସାଇଟି**
୨୦/୧, ଗଙ୍ଗାଧରବାବୁ ଲେନ୍, କଲିକତା

*ଚିଟ୍ଟାଗଙ୍ଗ*

**କୃଷ୍ଣ ଚନ୍ଦ୍ର ଚୌଧରୀ**
ସଂପାଦକ, ବୁଦ୍ଧିଷ୍ଟ ଏଡ଼ ଆସୋସିଏସନ, ରାଜୋନ୍, ଚିଟ୍ଟାଗଙ୍ଗ

*ଅରକାନ*

**ମଙ୍ଗ ଲା ପ୍ରୁ**
ସହକାରୀ କମିଶନରଙ୍କ କାର୍ଯ୍ୟାଳୟ, ଅକ୍ୟାବ ।

କାର୍ଯ୍ୟାଳୟର କର୍ମକର୍ତ୍ତା ଓ ପ୍ରତିନିଧିଙ୍କ ନାମରୁ ଏହା ସ୍ପଷ୍ଟ ଯେ, ଏହି ସୋସାଇଟି ବାସ୍ତବରେ ଏସିଆ ମହାଦେଶର ବୌଦ୍ଧମାନଙ୍କର ପ୍ରତିନିଧିତ୍ୱ କରୁଥିବା ଏକ ସଂସ୍ଥା ଥିଲା । ଏହାର ସାଧାରଣ ସଂପାଦକ ମିଷ୍ଟର ଧର୍ମପାଳ ଜଣେ ଯୁବକ ଥିଲେ ଓ ସେହିପରି କର୍ଣ୍ଣେଲ ଏଚ. ଏସ୍. ଓଲକଟଙ୍କ ପରି ଜଣେ ସମ୍ମାନସ୍ପଦ ବୟସ୍କ ବ୍ୟକ୍ତି ଏହି ସଂସ୍ଥାର ଦାୟିତ୍ୱରେ ଥିଲେ ।

୧୮୯୧ ମସିହା ଜୁଲାଇ ମାସରେ ସେ ଗୃରିଜଣ ରମନା ସଂପ୍ରଦାୟର ଭିକ୍ଷୁଙ୍କ ସିଲୋନରୁ ବୁଦ୍ଧଗୟା ପଠାଇବାର ବ୍ୟବସ୍ଥା କରି କଲିକତା ପର୍ଯ୍ୟନ୍ତ ରୋଗେଟ୍ଟା ଷ୍ଟିମରରେ ସେମାନଙ୍କ ସାଙ୍ଗରେ ଗଲେ । କଲିକତାରୁ ଭିକ୍ଷୁମାନଙ୍କୁ ରେଳଯୋଗେ ବୁଦ୍ଧଗୟା ପଠାଇ ଦିଆଗଲା । ବର୍ମାର ରାଜା ମିନ୍ଦନ ମିନ ନିର୍ମାଣ କରିଥିବା ବିଶ୍ରାମାଳୟରେ ସେମାନେ ଆଶ୍ରୟ ନେଲେ ।

ଧର୍ମପାଳ କଲିକତାକୁ ଫେରିଆସି ତାଙ୍କ ବନ୍ଧୁ ନୀଲ କମଲ ମୁଖାର୍ଜୀଙ୍କ ଗୃହରେ ଅବସ୍ଥାନ କଲେ ଓ ନୀଲକମଲ ମୁଖାର୍ଜୀଙ୍କ ପରିବାର ସମ୍ପର୍କରେ ଆସିବା କାରଣରୁ ଅନେକଙ୍କ ସହ ତାଙ୍କର ବନ୍ଧୁତା ସ୍ଥାପନ ହୋଇପାରିଥିଲା ।

୧୮୯୧ ମସିହା ଅକ୍ଟୋବର ମାସରେ ସେ କଲିକତାର କାଲକାଟା ଆଲବର୍ଟ ହଲ (ବର୍ତ୍ତମାନ ତାହା କଲେଜ ଷ୍ଟ୍ରୀଟର କଫି ହାଉସ)ରେ ଏକ ସଭାରେ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ମଧ୍ୟରେ ଥିବା ସମ୍ପର୍କ ବିଷୟରେ ଇଂରେଜୀରେ ପ୍ରଥମ ଭାଷଣ ଦେଲେ । ଦୁଇଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବାପାଇଁ ଏହା ତାଙ୍କର ପ୍ରଥମ ପ୍ରଚେଷ୍ଟା ଥିଲାବୋଲି ବିବେଚନା କରାଯାଏ ଓ ଏଥିରେ ଅନେକ ବୁଦ୍ଧିଜୀବୀ ଯୋଗଦାନ କରିଥିଲେ । ସେ ସମୟର ଏକ ପ୍ରଭାବଶାଳୀ ସମ୍ବାଦପତ୍ର 'ଇଣ୍ଡିଆନ ମିରର'ର ସଂପାଦକ ମିଷ୍ଟର ନରେନ୍ଦ୍ର ନାଥ ସେନ ମଧ୍ୟ ଏହି ସଭାରେ ଯୋଗଦାନ କରିଥିଲେ ।

ପୁନରାୟ ସେହି ମାସରେ ବୁଦ୍ଧଗୟା ମନ୍ଦିରର ଅବହେଳିତ ଅବସ୍ଥା ସମ୍ପର୍କରେ ପୃଥିବୀର ବୌଦ୍ଧମାନଙ୍କର ଦୃଷ୍ଟି ଆକର୍ଷଣ କରିବାର ମହାନ ଲକ୍ଷ୍ୟ ନେଇ ସେ ବୁଦ୍ଧଗୟାଠାରେ ଆନ୍ତର୍ଜାତିକ ବୌଦ୍ଧସମ୍ମିଳନୀ ଆହ୍ୱାନ କରିଥିଲେ । ନରେନ୍ଦ୍ର ନାଥ ସେନ ଏହି ସମ୍ମିଳନୀରେ ଯୋଗଦାନ କରିଥିଲେ । ଏଥିରେ ସିଲୋନ୍ (ଶ୍ରୀଲଙ୍କା), ଚୀନ, ବର୍ମା (ମିଆଁମାର) ବର୍ତ୍ତମାନ ବଙ୍ଗଳା ଦେଶର ଚିଟ୍ଟାଗଙ୍ଗ ଓ ଭାରତର ଉଭୟ ବୌଦ୍ଧସନ୍ନ୍ୟାସୀ ତଥା ସାଧାରଣ ବୌଦ୍ଧ ନେତୃସ୍ଥାନୀୟ ବ୍ୟକ୍ତିମାନେ ଯୋଗଦାନ କରିଥିଲେ ।

ଆଗରୁ କୁହାଯାଇଛି ଧର୍ମପାଳ କଲିକତାର ଗଙ୍ଗାଧରବାବୁ ଲେନ୍‌ରେ ମହାବୋଧି ସୋସାଇଟି ସ୍ଥାପନ କରି ସେଠାରେ ତାଙ୍କର ସ୍ଥିତି ସୁଦୃଢ଼ କରିଥିଲେ । ପରବର୍ତ୍ତୀ ସମୟରେ ଏହା ୨, କ୍ରିକ୍ ରୋଡ଼୍ କୁ ସ୍ଥାନାନ୍ତରିତ କରାଯାଇଥିଲା ।

ତାଙ୍କର ଲକ୍ଷ୍ୟ ପୂରଣ ଦିଗରେ ଅଧିକ ପାଦେ ଆଗେଇଯିବା ପାଇଁ ସେ ୧୮୯୨ ମେ ମାସରେ ମହାବୋଧି ପତ୍ରିକା ପ୍ରକାଶ କଲେ ।

ସେପ୍‌ଟେମ୍ବର ୧୮୯୩ ମସିହାରେ ଧର୍ମପାଳ ମହାବୋଧି ସୋସାଇଟି ତଥା ପୃଥିବୀର ବୌଦ୍ଧମାନଙ୍କର ପ୍ରତିନିଧି ଭାବରେ ନିମନ୍ତ୍ରିତ ହୋଇ ଚିକାଗୋରେ ଅନୁଷ୍ଠିତ ହେଉଥିବା ଧର୍ମଗୁଡ଼ିକର ବିଶ୍ୱ ସମ୍ମିଳନୀ (World Parliament of Religions)ରେ ଯୋଗଦାନ କରିଥିଲେ । ୧୮ ସେପ୍‌ଟେମ୍ବରରେ ତାଙ୍କର ବକ୍ତୃତା "ବୁଦ୍ଧଙ୍କ ପାଖରେ ବିଶ୍ୱ ଋଣୀ" ସେଠାରେ ଯୋଗଦାନ କରିଥିବା ଅଂଶଗ୍ରହଣକାରୀଙ୍କୁ ଅଭିଭୂତ କରିଦେଇଥିଲା ଏବଂ କେତେକ ଆମେରିକୀୟ ଭଦ୍ରଲୋକ ଓ ଭଦ୍ରମହିଳା ସଂଗେ ସଂଗେ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ।

## ଅନଗାରିକ ଧର୍ମପାଳ ଓ ସ୍ୱାମୀ ବିବେକାନନ୍ଦ :

ଏହି ଧର୍ମସଭାରେ ସ୍ୱାମୀ ବିବେକାନନ୍ଦ ହିନ୍ଦୁଧର୍ମ ସମ୍ପର୍କରେ ୧୧ ସେପ୍‌ଟେମ୍ବରେ ତାଙ୍କ ବକ୍ତବ୍ୟ ରଖି ସାରା ବିଶ୍ୱକୁ ଚମତ୍କୃତ କରିଦେଇଥିଲେ ।

ସ୍ୱାମୀ ବିବେକାନନ୍ଦ ଅନଗାରକ ଧର୍ମପାଳଙ୍କ ବୌଦ୍ଧଧର୍ମ ସମ୍ପର୍କରେ ପ୍ରଦାନ କରିଥିବା ବକ୍ତୃତାକୁ ଭୂୟସୀ ପ୍ରଶଂସା କରିଥିଲେ ଏବଂ ଅନଗାରିକ ଧର୍ମପାଳଙ୍କୁ ବହୁ ଆଦର ଓ ସମ୍ମାନ କରିଥିଲେ ।

ସ୍ୱାମୀ ବିବେକାନନ୍ଦ ଓ ଅନଗାରିକ ଧର୍ମପାଳ ଦରିଦ୍ର ଜନସାଧାରଣଙ୍କୁ ସେମାନଙ୍କର ଅଜ୍ଞତା, ନିରକ୍ଷରତା, ଅଭାବ, ଅନାଟନ, ଦାରିଦ୍ର୍ୟ, ଶୋଷଣରୁ ମୁକ୍ତ କରିବାକୁ ଆଜୀବନ ଉଦ୍ୟମ କରିଥିଲେ । ଉଭୟ ମନୀଷୀ ଭାରତରୁ ଉଚ୍ଚନୀଚ଼ ଭେଦଭାବ ଓ ଜାତିପ୍ରଥା ବିଲୋପ ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ସ୍ୱାମୀ ବିବେକାନନ୍ଦ ପ୍ରତିଷ୍ଠା କରିଥିଲେ ରାମକୃଷ୍ଣ ମିଶନ୍ ଓ ସେହି ଲକ୍ଷ୍ୟ ନେଇ ଅନଗାରିକ ଧର୍ମପାଳ ଭାରତର ମହାବୋଧି ସୋସାଇଟି ସ୍ଥାପନ କରିଥିଲେ । ଏହି ଦୁଇଜଣ ନିଜର ବିରଳ ବ୍ୟକ୍ତିତ୍ୱ, ନିଷ୍ଠା, ଜ୍ଞାନ ଓ ସାଧନା ବଳରେ ଭାରତର ସଭ୍ୟତା, ଧର୍ମ ଓ ସଂସ୍କୃତି ଯେ କେତେ ମହାନ ତାହା ବିଶ୍ୱରେ ଲୋକଲୋଚ଼ନକୁ ଆଣିଥିଲେ । ସ୍ୱାମୀ ବିବେକାନନ୍ଦ ଅନଗାରିକଙ୍କୁ ଜଣେ ଅତି ଭଦ୍ର ଓ ହୃଦୟବାନ ବ୍ୟକ୍ତି ଭାବେ ବର୍ଣ୍ଣନା କରିଛନ୍ତି । ସେ ଦୁଇଜଣଙ୍କର ଘନିଷ୍ଠତା ଚିକାଗୋଠାରେ ଅନୁଷ୍ଠିତ ଧର୍ମମହାସଭା ପରଠାରୁ ନିବିଡ଼ତର ହୋଇଥିଲା ।

୨୮ ନଭେମ୍ବର ୧୮୮୬ ମସିହାରେ ମିସେସ୍ ମାରୀ ହାରିଆଟ ହେଲ (Misses Marry Harriat Hale)ଙ୍କୁ ଲଣ୍ଡନଠାରୁ ଏକ ଚିଠି ଲେଖି ସ୍ୱାମୀ ବିବେକାନନ୍ଦ ଧର୍ମପାଳଙ୍କ ବିଷୟରେ ଜାଣିବାକୁ ଚ଼ାହିଁଥିଲେ ଏବଂ ତାଙ୍କ ନିଜର ଶ୍ରଦ୍ଧା ଜଣାଇବାକୁ ଅନୁରୋଧ କରିଥିଲେ ।

୧୯ ମାର୍ଚ୍ଚ, ୧୮୯୪ ମସିହାରେ ସ୍ୱାମୀ ବିବେକାନନ୍ଦ ଚିକାଗୋଠାରୁ ଶଶିଙ୍କ ଉଦ୍ଦେଶ୍ୟରେ ଏକ ଚିଠି ଲେଖିଥିଲେ, ଯେଉଁଥିରେ ସେ ଅନଗାରିକ ଧର୍ମପାଳଙ୍କୁ ଜଣେ ଉତ୍ତମ ବ୍ୟକ୍ତି ଏବଂ ଆମେରିକାରେ ସର୍ବତ୍ର ଧର୍ମପାଳ ଜଣେ ଆଦରଣୀୟ ବ୍ୟକ୍ତିତ୍ୱ ବୋଲି ଉଲ୍ଲେଖ କରିଥିଲେ । ସ୍ୱାମୀ ବିବେକାନନ୍ଦ ଧର୍ମପାଳଙ୍କୁ ଏତେ ଭଲପାଉଥିଲେ ଯେ ବିଭିନ୍ନ ଉପାୟରେ ତାଙ୍କର ଖବର ସେ ଜାଣିବାକୁ ଉତ୍ସୁକ ଥିଲେ ।

୩୦ ଅଗଷ୍ଟ, ୧୮୯୪ ମସିହାରେ ସ୍ୱାମୀ ବିବେକାନନ୍ଦ ଆଲାଲ ସିଂହ (Ala Singhe)ଙ୍କୁ ଏକ ପତ୍ର ଲେଖି ଧର୍ମପାଳଙ୍କ ଠିକଣା ଚ଼ାହିଁଥିଲେ ଏବଂ ଧର୍ମପାଳଙ୍କୁ ଜଣେ ମହାନ୍ ବ୍ୟକ୍ତି ରୂପେ ବର୍ଣ୍ଣନା କରି ତାଙ୍କ ସହଯୋଗରେ ଉନ୍ନତିମୂଳକ କାର୍ଯ୍ୟ କରାଯାଇପାରିବ ବୋଲି ଆଶା ପ୍ରକାଶ କରିଥିଲେ । ୧୮୯୪ ମସିହାରେ ଅନଗାରିକ ଧର୍ମପାଳ କଲିକତାରେ ସୁନ୍ଦର ଭାବରେ ତାଙ୍କ ବକ୍ତୃତା ମାଧ୍ୟମରେ ଧର୍ମ ଓ ସମାଜସେବା ବିଷୟରେ ବୁଝାଉଥିବା ଅବଗତ ହୋଇ ସେ ଅନଗାରିକ ଧର୍ମପାଳଙ୍କୁ

ଏକ ପତ୍ର ଲେଖିଥିଲେ ଏବଂ ସେଥିରେ ବହୁଜନ ହିତାୟ ଓ ବହୁଜନ ସୁଖାୟ ପାଇଁ ସେ କାର୍ଯ୍ୟ କରୁଥିବାରୁ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରିଥିଲେ ।

୩ ଜାନୁୟାରୀ, ୧୮୯୭ ମସିହାରେ ମିସ୍ ମାରୀ ହେଲଙ୍କୁ ଏକ ପତ୍ରରେ ଅନଗାରିକ ଧର୍ମପାଳଙ୍କ କାର୍ଯ୍ୟାବଳୀ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବାକୁ ଇଚ୍ଛା ପ୍ରକାଶ କରିଥିଲେ । ଏହିସବୁ ଦୃଷ୍ଟାନ୍ତ ସ୍ୱାମୀଜୀ ଓ ଅନଗାରିକ ଧର୍ମପାଳଙ୍କର ନିବିଡ଼ତା ସମ୍ପର୍କରେ ସମ୍ୟକ୍ ସୂଚନା ଦିଏ । ସ୍ୱାମୀ ବିବେକାନନ୍ଦଙ୍କୁ ଧର୍ମପାଳ ଅତ୍ୟନ୍ତ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ତାଙ୍କ ବକ୍ତୃତାମାନଙ୍କରେ ସ୍ୱାମୀଜୀଙ୍କର ଗୁଣଗାନ କରୁଥିଲେ । ୪ ତାରିଖ ଜୁଲାଇ ୧୯୦୨ ମସିହାରେ ସ୍ୱାମୀଜୀ ଦେହତ୍ୟାଗ କରିଥିଲେ । ତାଙ୍କର ଅକାଳ ମୃତ୍ୟୁ ଧର୍ମପାଳଙ୍କୁ ମର୍ମାହତ କରିଥିଲା ।

ଅନଗାରିକ ଧର୍ମପାଳ ଭାରତର ମର୍ଯ୍ୟାଦା ବିଶ୍ୱଦରବାରରେ କିଭଳି ବୃଦ୍ଧିପାଇବ ସେଥିପାଇଁ ସଦାସର୍ବଦା ଚେଷ୍ଟିତ ଥିଲେ । ତାଙ୍କ କାର୍ଯ୍ୟାବଳୀକୁ ସମୀକ୍ଷା କରି ବଂଗଳାର ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ବିନୟ ସରକାର ଲେଖଥିଲେ ଯେ, "ଧର୍ମପାଳଙ୍କ ଉନ୍ନତିମୂଳକ କାର୍ଯ୍ୟ କେବଳ ବଂଗଳାରେ ସୀମିତ ନୁହେଁ, ତାହା ସାରା ଭାରତ ଓ ଏସିଆ ମହାଦେଶରେ ସଂପ୍ରସାରିତ ହୋଇଛି ।"

ଊନବିଂଶ ଶତାବ୍ଦୀରେ ଧର୍ମପାଳଙ୍କ ଜୀବନରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଏଠାରେ ଉଲ୍ଲେଖ କରାଯାଇପାରେ, ଅନଗାରିକ ଧର୍ମପାଳ ଏହି ସମ୍ମିଳନୀରେ ବୌଦ୍ଧଧର୍ମର ପ୍ରତିନିଧି ଭାବରେ ଯୋଗଦାନ କରିଥିଲେ । ଏହି ସମ୍ମିଳନୀରେ ସେ "ଗୌତମ ବୁଦ୍ଧଙ୍କ ପାଖରେ ବିଶ୍ୱ ଋଣୀ" ଶୀର୍ଷକ ଭାଷଣ ପ୍ରଦାନ କରିଥିଲେ ।

## ବୁଦ୍ଧଙ୍କଠାରେ ବିଶ୍ୱ ଋଣୀ :

✓ପଚିଶ ଶତାବ୍ଦୀ ପୂର୍ବର ପ୍ରାଚୀନ ଭାରତରେ ଏକ ଧର୍ମୀୟ ବିପ୍ଳବର ଧାରା ପରିଲକ୍ଷିତ ହୋଇଥିଲା । ତତ୍କାଳୀନ ଭାରତୀୟ ସମାଜରେ ମୁଖ୍ୟତଃ ଦୁଇଗୋଟି ପ୍ରସିଦ୍ଧ ଧାର୍ମିକ ପ୍ରତିଷ୍ଠାନର ଉଦ୍ଭବ ହୋଇଥିଲା । ଗୋଟିଏ ଥିଲା ଶ୍ରମଣ ଏବଂ ଅନ୍ୟଟି ଥିଲା ବ୍ରାହ୍ମଣ । ଦୁଇ ପ୍ରତିଷ୍ଠାନର ପ୍ରମୁଖ ଗୁରୁମାନେ ନିଜ ନିଜର ଶିଷ୍ୟମାନଙ୍କ ଦ୍ୱାରା ନିଜ ଧର୍ମର ପ୍ରଚାର କରାଇବା ସହିତ ସେମାନଙ୍କୁ ସେହି ଧର୍ମରେ ଦୀକ୍ଷିତ କରାଇବାର ପ୍ରୟାସ କରୁଥିଲେ । ସତ କହିବାକୁ ଗଲେ ସେତେବେଳର ବାତାବରଣରେ ଆଧ୍ୟାତ୍ମିକ ସଂଗ୍ରାମର ପବନ ଖେଳି ବୁଲୁଥିଲା ଏବଂ ଏଥିରେ ଅନେକ ଉଚ୍ଚବଂଶର ଶିକ୍ଷିତ ତଥା ମେଧାବୀ ଯୁବକ ସାମିଲ ହୋଇଥିଲେ । ସତ୍ୟର ସନ୍ଧାନ ପାଇଁ ସେମାନେ ନିଜର ଘର ପରିବାର, ପିତାମାତା, ଜ୍ଞାତିକୁଟୁମ୍ବ ପରିତ୍ୟାଗ କରିଥିଲେ । ଏହି ସମୟରେ ବ୍ରାହ୍ମଣମାନଙ୍କର ପତିଆରା ଖୁବ୍ ବେଶୀ ଥିଲା । ବଳିଦାନରେ ଦକ୍ଷ

ପୂଜକମାନଙ୍କୁ ଖୁବ୍ ଶକ୍ତିଶାଳୀ ମନେ କରାଯାଉଥିଲା । ଲୋକମାନେ ସେମାନଙ୍କୁ ଭଗବାନ ଏବଂ ମଣିଷଙ୍କ ମଧ୍ୟରେ ସଂଯୋଗକାରୀ ବୋଲି ମନେ କରୁଥିଲେ । ବସ୍ତୁତଃ ନୈତିକ ବିଗ୍ରହଧାରା ଧର୍ମ ତଥା ଅନ୍ଧବିଶ୍ୱାସର କବଳିତ ହୋଇ ରହିଥିଲା । ଏହି ସମୟରେ ଆବିର୍ଭାବ ହୋଇଥିଲେ ଭଗବାନ ବୁଦ୍ଧ । ବୌଦ୍ଧଧର୍ମ ଅନ୍ଧବିଶ୍ୱାସ କବଳିତ ସମାଜକୁ ନିର୍ବାଣ ଅଭିମୁଖୀ କରାଇବାରେ ସତତ ଚେଷ୍ଟିତ ହୋଇଥିଲା ୪

**ନୂଆ ଯୁଗର ଆରମ୍ଭ :** ପ୍ରାଚ୍ୟର ମେଧାବୀ ଗବେଷକମାନେ ଏହି ଶତାବ୍ଦୀରେ ଭାରତୀୟ ଭାଷା, ସାହିତ୍ୟ, ଦର୍ଶନ ସମ୍ବନ୍ଧରେ ଗବେଷଣା ଆରମ୍ଭ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ବୁଦ୍ଧଙ୍କ ନାମରେ ନାମିତ ବୌଦ୍ଧଧର୍ମ ପ୍ରତି କେତେକ ଭ୍ରାନ୍ତ ଧାରଣା ପୋଷଣ କରିଥିଲେ । ସେମାନଙ୍କ ମଧ୍ୟରେ ସାର ଉଇଲିୟମ ଜୋନ୍ସ, ଏଚ. ଏଚ. ଉଇଲସନ ଆଦି ଅନ୍ୟତମ । ୧୮୨୪ରେ ଡକ୍ଟର ମାର୍ଶମ୍ୟାନ କହିଥିଲେ- Buddha was the Egyptian Apis । ସେହିଭଳି ସାର ଉଇଲିୟମ ଜୋନ୍ସଙ୍କ ମତରେ- He was no other than the Scandinavian woden । ତେବେ ୧୮୩୭ ମସିହାରେ ବିଭିନ୍ନ ପ୍ରତ୍ନତତ୍ତ୍ୱବିତ୍‌ମାନେ ସମ୍ରାଟ ଅଶୋକଙ୍କ ଦ୍ୱାରା ଖୋଦିତ ଶିଳାଖଣ୍ଡ ସବୁ ଆବିଷ୍କୃତ କରି ବୁଦ୍ଧ ତଥା ବୌଦ୍ଧଧର୍ମକୁ ନେଇ ରହିଥିବା ଭ୍ରାନ୍ତ ଧାରଣାର ଅବସାନ ଘଟାଇଥିଲେ । ୧୮୪୪ରେ ବୌଦ୍ଧଧର୍ମକୁ ନେଇ ପ୍ରସିଦ୍ଧ 'ଗବେଷକ ଇଉଜିନ୍ ବର୍ଣ୍ଣୋଫ୍ ଏକ ପୁସ୍ତକ ଲେଖିଲେ । ଏହି ପୁସ୍ତକରୁ ଜଣାପଡ଼ିଲା ଯେ, ବୁଦ୍ଧଙ୍କ ଜ୍ଞାନର ଭଣ୍ଡାର ଅସୀମ । ତାଙ୍କର ପ୍ରେମ ସ୍ୱଚ୍ଛ, ଅନାବିଳ ତଥା ବନ୍ଧନହୀନ । ସେ ପରମଦୟାଳୁ । ତେଣୁ ତାଙ୍କର ଆଉ ଏକ ନାମ 'ମହାକାରୁଣିକ' । ମାନବ ସମାଜ ପ୍ରତି ବୁଦ୍ଧଙ୍କର ଜ୍ଞାନ ଏବଂ ଦୟାର ଅନ୍ତ ନାହିଁ । ତାଙ୍କର ଶ୍ରେଷ୍ଠ ଶିଷ୍ୟ ହେଉଛନ୍ତି 'ସାରିପୁତ୍ତ' । ଭଗବାନ ବୁଦ୍ଧଙ୍କର ଜୀବନ ଥିଲା ଅତି ପବିତ୍ର । ସେ ଜଗତକୁ ଅନେକପ୍ରକାର ସତ୍-ଶିକ୍ଷା ପ୍ରଦାନ କରିଛନ୍ତି ।

ଈଶ୍ୱରପୁତ୍ର ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ୫୪୩ ବର୍ଷ ପୂର୍ବେ କପିଳବାସ୍ତୁ ରାଜ୍ୟର ଲୁମ୍ବିନୀଠାରେ ଥିବା ରାଜ ଉଦ୍ୟାନରେ ବୁଦ୍ଧ ଜନ୍ମ ହୋଇଥିଲେ । ତାଙ୍କର ମା' ଥିଲେ ସୂର୍ଯ୍ୟବଂଶର ରାଜା ଶୁଦ୍ଧୋଦନଙ୍କର ପତ୍ନୀ ମାୟା । ସେ ପିଲାଟିବେଳୁ ଜଗତ ପ୍ରତି ବୀତସ୍ପୃହ ଥିଲେ । ଶେଷରେ ଘର, ରାଜ୍ୟ, ବାପାମା', ପତ୍ନୀପୁତ୍ରଙ୍କୁ ଛାଡ଼ି ସତ୍ୟର ସନ୍ଧାନ ପାଇଁ ଚାଲିଯାଇଥିଲେ । ଗୟାଠାରେ ଏକ ବୃହତ୍ ଅଶ୍ୱତ୍ଥ ବୃକ୍ଷ ମୂଳରେ ତାଙ୍କର ବୁଦ୍ଧତ୍ୱ ପ୍ରାପ୍ତି ହୋଇଥିଲା । ସାର ଏଡ଼ୱିନ୍ ଆର୍ଣ୍ଣୋଲଡ୍‌ଙ୍କ ମତରେ ସେ ଥିଲେ 'ଏସିଆର ଆଲୋକ ବର୍ତ୍ତିକା' । ଯୀଶୁଙ୍କ ଜନ୍ମର ୬ ଶତାବ୍ଦୀ ପୂର୍ବରୁ ତଥାଗତ ବୁଦ୍ଧ ଘରଘର ବୁଲି ପବିତ୍ର ଜୀବନର ରହସ୍ୟ ପ୍ରଚାର କରିଥିଲେ । ପ୍ରଥମେ ପବିତ୍ରନଗରୀ ବନାରସ ବା ଆଜିର ବାରାଣସୀର ସାରନାଥଠାରେ ଥିବା ଏକ ମୃଗ ଉଦ୍ୟାନ

ନିକଟରେ ସେ ତାଙ୍କ ପାଞ୍ଚଜଣ ଶିଷ୍ୟଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ ଏବଂ ସେମାନଙ୍କ ଦ୍ୱାରା ବୌଦ୍ଧଧର୍ମର ପ୍ରଚାର କରାଇଥିଲେ ।

**ପ୍ରଥମ ବାଣୀ :** ହେ ଭିକ୍ଷୁମାନେ ! କାନ ଖୋଲି ଶୁଣ । ମୃତ୍ୟୁଠୁ ମୁକ୍ତି ପାଇବାର ମାର୍ଗ ମିଳିଯାଇଛି । ତାହା ମୁଁ ତୁମମାନଙ୍କୁ ଶିଖେଇବି । ମୁଁ ସେହି ବାଣୀ ପ୍ରଚାର କରିବି । ଯଦି ତୁମେମାନେ ମୋ ଶିକ୍ଷାକୁ ଗ୍ରହଣ କରିବ ତା'ହେଲେ ଖୁବ୍‌ଶୀଘ୍ର ତୁମମାନଙ୍କୁ ସେହି ଜ୍ଞାନପ୍ରାପ୍ତ ହେବ ଯାହାକୁ ପାଇବା ପାଇଁ ଉଚ୍ଚବଂଶର ସନ୍ତାନମାନେ ଘରଦ୍ୱାର ଛାଡ଼ି ଏଣେତେଣେ ଘୂରି ବୁଲୁଛନ୍ତି । ସେହି ଜ୍ଞାନ ପାଇବା ପରେ ତୁମେମାନେ ପ୍ରତ୍ୟକ୍ଷ ସତ୍ୟର ସାମ୍ନା କରିବ । ଏହାପରେ ବୁଦ୍ଧ କହିବା ଆରମ୍ଭ କରିଥିଲେ-ଏ ପୃଥିବୀରେ ଦୁଇଟା ପନ୍ଥା ଅଛି, ଯାହାକୁ ସତ୍ୟର ସନ୍ଧାନୀମାନେ ଅନୁସରଣ କରିବା ଉଚିତ ନୁହେଁ । ଗୋଟିଏ ଭୋଗବାଦ (Sensualism) ଏବଂ ଅନ୍ୟଟି ନୈରାଶ୍ୟବାଦ (Pessimism) । ଏ ଦୁଇଟିଯାକ ପନ୍ଥା ଗ୍ରହଣୀୟ ନୁହେଁ କାରଣ-ଏଥିରେ ଅଜ୍ଞତା ଅଛି । ଯନ୍ତ୍ରଣା ଅଛି । ତେବେ ଏ ଦୁଇ ପନ୍ଥା ମଧ୍ୟରେ ଆଉ ଏକ ରାସ୍ତା ଅଛି । ଏହି ରାସ୍ତାରେ ଗଲେ ତୁମମାନଙ୍କର ଆଖି ଖୋଲିଯିବ । ତୁମେମାନେ ସତ୍ୟକୁ ଦେଖିପାରିବେ । ଫଳରେ ତୁମର ମନକୁ ଶାନ୍ତି ମିଳିବ । ତୁମେମାନେ ବାସ୍ତବ ଜ୍ଞାନର ଅଧିକାରୀ ହୋଇପାରିବ । ଶାଶ୍ୱତ ଆନନ୍ଦର ଅଧିକାରୀ ହୋଇପାରିବ । ଭଗବାନ ତଥାଗତ ଯେଉଁ ମଧ୍ୟବର୍ତ୍ତୀମାର୍ଗ ଦେଖାଇଛନ୍ତି ତାହା ଆଉ କିଛି ନୁହେଁ, ତାହା ହେଉଛି 'ଅଷ୍ଟାଙ୍ଗ ମାର୍ଗ' । ଯଥା-ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଂକଳ୍ପ, ସମ୍ୟକ୍ ବାକ୍, ସମ୍ୟକ୍ କର୍ମାନ୍ତ, ସମ୍ୟକ୍ ଆଜୀବ, ସମ୍ୟକ୍ ବ୍ୟାୟାମ, ସମ୍ୟକ୍ ସ୍ମୃତି, ସମ୍ୟକ୍ ସମାଧି ।

ବୁଦ୍ଧଙ୍କ ମତରେ-ଜନ୍ମ ଯନ୍ତ୍ରଣାଦାୟକ, ବୃଦ୍ଧାବସ୍ଥା ଯନ୍ତ୍ରଣାଦାୟକ, ରୋଗ ଯନ୍ତ୍ରଣାଦାୟକ, ଦୁଃଖ ସହ ସଂଶ୍ଳିଷ୍ଟ ହେବା ଯନ୍ତ୍ରଣାଦାୟକ, ସୁଖରୁ ବଞ୍ଚିତ ହେବା ଯନ୍ତ୍ରଣାଦାୟକ, ଇଚ୍ଛାର ଅତୃପ୍ତି ଯନ୍ତ୍ରଣାଦାୟକ । ସଂକ୍ଷେପରେ କହିଲେ-ଦେହ ଧରି ପୃଥିବୀକୁ ଆସିବା ବେଳେ ଯନ୍ତ୍ରଣା ହିଁ ଯନ୍ତ୍ରଣା । ଏସବୁରୁ ମୁକ୍ତିଦେବ କେବଳ ଏହି ଅଷ୍ଟାଙ୍ଗ ମାର୍ଗ ।

ବନାରସର ସାରନାଥଠାରେ ନିଜର ପଞ୍ଚଶିଷ୍ୟଙ୍କୁ ଦୀକ୍ଷିତ କରାଇ ବୁଦ୍ଧ କହିଥିଲେ-ହେ ଭିକ୍ଷୁମାନେ ! ତୁମେମାନେ ଯାଇ ମାନବ ସମାଜର କଲ୍ୟାଣ ନିମନ୍ତେ ଏହି ଧର୍ମର ପ୍ରଚାର କର । ମୋର ଏହି ବାଣୀକୁ ଗୌରବାନ୍ୱିତ କରିଦିଅ । ତୁମେମାନେ ନିଜେ ଶୁଦ୍ଧ ଜୀବନ ବିତାଅ ଏବଂ ଅନ୍ୟମାନଙ୍କୁ ଏହି ଜୀବନ ବିତାଇବାର ପ୍ରେରଣା ଦିଅ । ତୁମେମାନେ ଦେଶ ପରେ ଦେଶ ଭ୍ରମଣ କରି ଆଉ ଯେଉଁମାନେ ଏହି ମନ୍ତ୍ରରେ ଦୀକ୍ଷିତ ହୋଇ ନାହାନ୍ତି ସେମାନଙ୍କୁ ଦୀକ୍ଷିତ କରାଅ । ହେ ଭିକ୍ଷୁମାନେ !

ଯାଅ, ଜଗତକୁ ଉଦ୍ଧାର କର । ସମସ୍ତଙ୍କ କାନରେ କହିଦିଅ ଯେ, ବିଶ୍ୱକୁ ଭଗବାନ ବୁଦ୍ଧଙ୍କ ଆଶୀର୍ବାଦ ଆସିଗଲାଣି ।

ବୁଦ୍ଧଙ୍କ ଶିକ୍ଷାର ସାରାଂଶ ହେଉଛି-ମନ୍ଦଗୁଣର ବିନାଶ, ସତ୍ୟ ଏବଂ ପବିତ୍ରତାର ପରିପ୍ରକାଶ, ମନର ସମ୍ପୂର୍ଣ୍ଣ ଶୁଦ୍ଧତା । ବୁଦ୍ଧଙ୍କର ଏହି ଜ୍ଞାନ ସବୁ 'ତ୍ରିପିଟକ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

**ମାନବୀୟ ଭ୍ରାତୃତ୍ୱବୋଧ :** ବୁଦ୍ଧ ଏହି ପର୍ଯ୍ୟାୟରେ ସାର୍ବଜନୀନ ପ୍ରେମର ବାର୍ତ୍ତା ପ୍ରଦାନ କରିଛନ୍ତି । ମଣିଷଙ୍କୁ ହେଉ କି ପଶୁପକ୍ଷୀଙ୍କୁ ହେଉ ସମସ୍ତଙ୍କୁ ଏକାଭଳି ଭଲପାଇବା ହିଁ ଏହି ପର୍ଯ୍ୟାୟର ଶିକ୍ଷା । ବୁଦ୍ଧ କହିଛନ୍ତି-ମା' ଯେମିତି ନିଜର ପିଲାମାନଙ୍କୁ ସମାନ ଭାବରେ ଭଲପାଏ, ସମାନ ଭାବରେ ଦେଖାଶୁଣା କରେ ଠିକ୍ ସେମିତି ସମସ୍ତେ କରିବା ଆବଶ୍ୟକ । ମନରେ ପବିତ୍ରତା ଆସିଗଲେ ଭ୍ରାତୃତ୍ୱବୋଧ ସୃଷ୍ଟି ହୋଇଥାଏ । ସେତେବେଳେ ନିଜ ପର ଭାବ ମନରେ ଦୂର ହୋଇଯାଏ ।

**ବୌଦ୍ଧଧର୍ମର ବିଶ୍ୱାସ :** ବୁଦ୍ଧଙ୍କ ମତରେ ଭଗବାନ ବା ଦେବତା ବୋଲି କେହି ନାହାନ୍ତି । ତାଙ୍କର ମତ ବିବର୍ତ୍ତନ ତତ୍ତ୍ୱକୁ ସମର୍ଥନ କରେ । ସବୁ ଘଟିବା ପଛରେ କିଛି ନା କିଛି କାରଣ ରହିଛି ବୋଲି ବୁଦ୍ଧଙ୍କର ମଧ୍ୟ ମତ ।

**ବିଶ୍ୱାସ-ଅବିଶ୍ୱାସ :** ବୁଦ୍ଧ କହନ୍ତି-ଯାହା କିଛି ଶୁଣୁଛ ସେସବୁକୁ ବିନା ବିଶ୍ଳେଷଣରେ ବିଶ୍ୱାସ କରି ନିଅନି । ପରମ୍ପରାରେ ବିଶ୍ୱାସ ରଖନାହିଁ । ଗୁଜବକୁ ପରତେ ଯାଅ ନାହିଁ । ଅନ୍ଧବିଶ୍ୱାସକୁ ସମ୍ମାନ ଦିଅନାହିଁ । ଗୁରୁଜନ ବା ଶିକ୍ଷକଙ୍କ କଥାକୁ ଅନ୍ଧଭାବରେ ଅନୁସରଣ କରନାହିଁ । ପ୍ରଥମେ ସେସବୁକୁ ବିଶ୍ଳେଷଣ କର । ତା' ପଛରେ ଥିବା ପ୍ରମାଣ ବାହାର କର । ତା'ପରେ ଯାଇ ବିଶ୍ୱାସ କର ।

**ହୀନବୃତ୍ତି :** ବୁଦ୍ଧଙ୍କ ମତରେ ଅସ୍ତ୍ରଶସ୍ତ୍ର ବିକିବା, ଦାସ (ଭୃତ୍ୟ) ଯୋଗାଣ କରିବା, ବିଷ ବିକ୍ରି କରିବା, ମାଂସ ବ୍ୟବସାୟ କରିବା ଆଦି ହେଉଛି ସବୁଠାରୁ ହୀନକାମ ବା ବୃତ୍ତି ।

**ପଞ୍ଚ ସମ୍ପଦ :** ବିଶ୍ୱାସ, ଶୁଦ୍ଧପୂତ ଜୀବନ, ଉଦାରତା, ଜ୍ଞାନ ଓ ସୁସ୍ଥ ମନ ହେଉଛି ପାଞ୍ଚ ପ୍ରକାରର ସମ୍ପଦ । ଯେଉଁମାନେ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କରନ୍ତି ସେମାନଙ୍କୁ ବୁଦ୍ଧ ଏହି ପଞ୍ଚ-ସମ୍ପଦ ପ୍ରଦାନ କରନ୍ତି ।

**ବୁଦ୍ଧଙ୍କ ଶିକ୍ଷାର ସାର୍ବଜନୀନତା :** ବୁଦ୍ଧ କହନ୍ତି-ସେହି ପ୍ରାଣୀ ମୃତ୍ୟୁପରେ ବି ଅନୁତାପ କରେ ନାହିଁ ଯିଏ ଦୃଢ଼ ବିଶ୍ୱାସୀ, ଯିଏ ସତ୍ୟ, ନ୍ୟାୟ, ଦୃଢ଼ତା ଏବଂ ଉଦାରତା ଆଦି ଦିବ୍ୟ ଗୁଣାବଳୀକୁ ଧାରଣ କରିଥାଏ । ଏହି ଗୁରିଗୁଣଠୁ ବଡ଼ ଆଉ କିଛି ଏ ଜଗତରେ ନାହିଁ ।

**ଛାତ୍ର-ଶିକ୍ଷକ :** ଛାତ୍ର ଶିକ୍ଷକଙ୍କଠାରେ ଅନୁଗତ ହେବା ଉଚିତ । ତାଙ୍କୁ ସମ୍ମାନ ଦେବା ଉଚିତ ଏବଂ ତାଙ୍କର ସବୁକଥା ପାଳନ କରିବା ଆବଶ୍ୟକ । ସେହିଭଳି ଶିକ୍ଷକ ଛାତ୍ରଙ୍କୁ ସ୍ନେହରୁ କେବେ ବି ବଞ୍ଚିତ କରିବା ଉଚିତ ନୁହେଁ ।

**ମାଲିକ-ଦାସ :** ମାଲିକ ଦାସକୁ ସେତିକି କାମ ଦେବା ଦରକାର ସେ ଯେତିକି କରିପାରିବ । ସେ ଦାସର ସମସ୍ତ ଦାୟିତ୍ୱ ବୁଝିବା ଦରକାର । ସେ ଅସୁସ୍ଥ ହେଲେ ତା' ପାଖରେ ଉପସ୍ଥିତ ରହିବା ଆବଶ୍ୟକ । ସେହିଭଳି ଦାସ ନିଜର ମାଲିକଙ୍କ ପ୍ରତି ବିଶ୍ୱସନୀୟ ଏବଂ ଅନୁଗତ ହେବା ଉଚିତ ।

**ଧର୍ମ ପ୍ରଗ୍ଚରକ-ସାଧାରଣ ଲୋକ :** ସାଧାରଣ ଲୋକଙ୍କ ପ୍ରତି ଜଣେ ଧର୍ମ ପ୍ରଗ୍ଚରକ ତାଙ୍କର ଭାବନାକୁ ମୁକ୍ତ କରିବା ଉଚିତ । ସେମାନଙ୍କୁ ଭଲବାଟକୁ ଆଣିବାର ମାର୍ଗ ତିଆରି କରିବା ଦରକାର । ସେହିଭଳି ଧର୍ମପ୍ରଗ୍ଚରକ ଯାହା ଧର୍ମ ସମ୍ବନ୍ଧୀୟ ଶିକ୍ଷା ପ୍ରଦାନ କରୁଛନ୍ତି, ସାଧାରଣ ଲୋକଟି ତାହାକୁ ସମ୍ମାନ ପ୍ରଦର୍ଶନ କରିବା ଉଚିତ । ବୁଦ୍ଧ କହନ୍ତି-କେହି ନା କେହି ତଥାଗତ ଏ ସଂସାରକୁ ନିଶ୍ଚୟ ଆସିବେ ଏବଂ ଏ ଜଗତକୁ ଜ୍ଞାନ ପ୍ରଦାନ କରିବେ ।

**ବୁଦ୍ଧଙ୍କ ଶିଷ୍ୟ :** ବୁଦ୍ଧ କହନ୍ତି-ଯିଏ ଉଦାର ନୁହେଁ, ଦୟାଳୁ ନୁହେଁ, ଯିଏ ହତୋତ୍ସାହିତ, ଯାହାର ମନ ଅସୁସ୍ଥ, ଯିଏ ଅଶାନ୍ତ, ଯାହାର ନିୟନ୍ତ୍ରଣରେ ଇନ୍ଦ୍ରିୟ ନାହିଁ ସେ କେବେହେଲେ ତାଙ୍କର ନିକଟତର ହୋଇପାରିବ ନାହିଁ କି ଶିଷ୍ୟତ୍ୱ ଗ୍ରହଣ କରିପାରିବ ନାହିଁ ।

**ବୁଦ୍ଧଙ୍କ ପ୍ରଭାବ :** ସମଗ୍ର ଏସିଆ ବୁଦ୍ଧଙ୍କ ବାଣୀରେ ପ୍ରଭାବିତ ହୋଇଥିଲା । ଏଥିପାଇଁ କେହି କାହାରି ଉପରେ ବଳ ପ୍ରୟୋଗ କରି ନ ଥିଲା କିମ୍ବା ବିନ୍ଦୁଏ ବି ରକ୍ତ ଝରି ନ ଥିଲା । ଶାକ୍ୟମୁନି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ ।

**ମଣିଷର ଲକ୍ଷ୍ୟ :** ମଣିଷର ଚରମ ଲକ୍ଷ୍ୟ ହେଉଛି ଦିବ୍ୟ ଶାନ୍ତି ପ୍ରାପ୍ତ ହେବା । ଏହି ଦିବ୍ୟ ବା ଶାଶ୍ୱତ ଆନନ୍ଦ ପାଇବା ପାଇଁ ଭଗବାନ ବୁଦ୍ଧ ଅଷ୍ଟାଙ୍ଗ ମାର୍ଗର ପ୍ରବର୍ତ୍ତନ କରିଛନ୍ତି । ବୁଦ୍ଧଙ୍କ ପ୍ରବର୍ତ୍ତିତ 'ନିର୍ବାଣ ତତ୍ତ୍ୱ'କୁ ଜଣେ ସାଧାରଣ ଲୋକ କେବେ ବି ବୁଝି ପାରିବ ନାହିଁ । ଜଣେ ଶୁଦ୍ଧ ଚେତନା ସମ୍ପନ୍ନ ମଣିଷ ହିଁ ଏହାକୁ ହୃଦୟଙ୍ଗମ କରିପାରେ । ଜଣେ ନିର୍ବାଣକୁ ବୁଝି ନ ପାରିବା ଯାଏ ଜନ୍ମ ଏବଂ ମୃତ୍ୟୁ ଚକ୍ରରେ ପଡ଼ି ହନ୍ତସନ୍ତ ହେଉଥାଏ । ମାତ୍ର ଥରୁଟେ ନିର୍ବାଣ ଆସିଗଲେ ନା ହୁଏ ଜନ୍ମ ନା ହୁଏ ମୃତ୍ୟୁ । ଏହାକୁ ହିଁ କୁହାଯାଏ ଶାଶ୍ୱତ ଶାନ୍ତି ବା ଚୀର ଆନନ୍ଦ ।

**ମୋକ୍ଷ :** ଶୁଦ୍ଧତା, ପବିତ୍ରତା, ଆତ୍ମ ବଳିଦାନ, ଆତ୍ମଜ୍ଞାନ, ଧୈର୍ଯ୍ୟ, ସତ୍ୟ, ପ୍ରେମ ଆଦି ଦ୍ୱାରା ମୋକ୍ଷ ପ୍ରାପ୍ତି ସମ୍ଭବ । ବୁଦ୍ଧଙ୍କ ମତରେ ଜାତିପ୍ରଥା ଏକ ଘୃଣ୍ୟ

ପ୍ରଥା । ତେଣୁ ଏହା ରହିବା ଉଚିତ ନୁହେଁ । ମଣିଷର ଏକମାତ୍ର ଲକ୍ଷ୍ୟ ମୋକ୍ଷ ବା ନିର୍ବାଣ ପ୍ରାପ୍ତି । ବୌଦ୍ଧତତ୍ତ୍ୱ ସାର୍ବଜନୀନ ଭ୍ରାତୃତ୍ୱବୋଧ ଉପରେ ପ୍ରତିଷ୍ଠିତ । ବୁଦ୍ଧ କହନ୍ତି-ସତତ ଶାନ୍ତି ପାଇବାକୁ ହେଲେ ଆମକୁ ଯୁଦ୍ଧ ଏବଂ ରକ୍ତପାତକୁ ଏଡ଼ାଇବାକୁ ପଡ଼ିବ ହିଁ ପଡ଼ିବ ।

ବୁଦ୍ଧ ପୁରୁଷ ଓ ମହିଳାମାନଙ୍କୁ ସମାନ ଅଧିକାର ପ୍ରଦାନ କରିଛନ୍ତି । ଯେକୌଣସି ମହିଳା ତାଙ୍କର ସାଧନା ଦ୍ୱାରା ପବିତ୍ରତାର ଚରମ ଶିଖରକୁ ଉଠିପାରିବେ । ମହାପରିନିର୍ବାଣସୁକ୍ତରେ ବୁଦ୍ଧ ସମସ୍ତଙ୍କୁ ନିଜର ଜନ୍ମଭୂମିକୁ ଭଲପାଇବାକୁ ଉପଦେଶ ଦେଇଛନ୍ତି । ଯେପର୍ଯ୍ୟନ୍ତ ନାଗରିକମାନେ ଏକତ୍ରିତ ହୋଇ ପୁରାତନ ଧର୍ମପୀଠଗୁଡ଼ିକର ସୁରକ୍ଷା କରିବେ, ଯେପର୍ଯ୍ୟନ୍ତ ବୟସ୍କ ବ୍ୟକ୍ତି ଓ ମହିଳାମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବେ, ସେପର୍ଯ୍ୟନ୍ତ ଦେଶ ଉନ୍ନତି ପଥରେ ଅଗ୍ରଗତି କରିବ । ବୁଦ୍ଧ ଯୁଦ୍ଧ ସର୍ବଦା ବର୍ଜନୀୟ ବୋଲି ମତପୋଷଣ କରିଥିଲେ । ଯେକୌଣସି ସମସ୍ୟାର ସମାଧାନ ମଧ୍ୟସ୍ଥମାନଙ୍କ ଦ୍ୱାରା ଆଲୋଚନା ମାଧ୍ୟମରେ କରାଯିବା ଉଚିତ ବୋଲି ସେ ଦର୍ଶାଇଛନ୍ତି ।

## ଅନଗାରିକ ଧର୍ମପାଳଙ୍କ ଆମେରିକାରୁ ପ୍ରତ୍ୟାବର୍ତ୍ତନ :

ଚିକାଗୋ (ଆମେରିକା)ରୁ ଫେରିଲା ସମୟରେ ଅନଗାରିକ ଧର୍ମପାଳ ନର୍ଥ ଆମେରିକାର ଜଣେ ଧନୀ ବ୍ୟାଙ୍କ ମାଲିକଙ୍କ ପତ୍ନୀ ମିସେସ ମେରୀ ଟି. ଫୋଷ୍ଟର (Mrs. Mary T. Foster) ଙ୍କ ସହ ତାଙ୍କର ସାକ୍ଷାତ୍ ହେଲା । ପରବର୍ତ୍ତୀ ସମୟରେ ସେ ମହାବୋଧି ସୋସାଇଟିର ଜଣେ ପ୍ରମୁଖ ପୃଷ୍ଠପୋଷକ ହୋଇଥିଲେ । ସେ ଅନଗାରିକଙ୍କ ପୋଷ୍ୟ ମାତା ଥିଲେ ଏବଂ ତାଙ୍କର ଦାନରେ ଅନେକ ବିଦ୍ୟାଳୟ, ଡାକ୍ତରଖାନା, ମନ୍ଦିର, ସ୍ତୁପ ଓ ଅନ୍ୟାନ୍ୟ ଅନୁଷ୍ଠାନମାନ ଭାରତ ଓ ଶ୍ରୀଲଙ୍କାର ପ୍ରତିଷ୍ଠିତ ହୋଇପାରିଥିଲା ।

୧୮୯୩ ଓ ୧୮୯୪ ମସିହାର ବୁଦ୍ଧଗୟା ମନ୍ଦିରର ଶୋଚନୀୟ ଅବସ୍ଥା ସମ୍ପର୍କରେ ସଚେତନତା ସୃଷ୍ଟି କରିବା ପାଇଁ ସେ ଲଣ୍ଡନ, ନ୍ୟୁୟର୍କ, ଜାପାନ, ଚୀନ, ରେଙ୍ଗୁନ, ବ୍ୟାଙ୍କକ୍ ଏବଂ କଲମ୍ବୋ ଯାତ୍ରା କରିଥିଲେ । ବୌଦ୍ଧଧର୍ମାବଲମ୍ବୀ ମାନଙ୍କଠାରୁ ଏହି ମନ୍ଦିରର ପୁନରୁଦ୍ଧାର ପାଇଁ ସାହାଯ୍ୟ ଭିକ୍ଷା କରିଥିଲେ । ସେତେବେଳେ ବୌଦ୍ଧଧର୍ମ ସମ୍ପର୍କରେ ସେ ଅନେକ ବକ୍ତୃତା ପ୍ରଦାନ କରିଥିଲେ ।

୧୮୯୩ ମସିହା ନଭେମ୍ବର ମାସରେ ସିବା, ଟୋକିଓରେ ଥିବା ତେନ୍ତୋକୁଜି ମନ୍ଦିରର ପରିଚାଳନା କର୍ତ୍ତୃପକ୍ଷଙ୍କ ଠାରୁ ତାଙ୍କୁ ଏକ ସୁନ୍ଦର ବୁଦ୍ଧମୂର୍ତ୍ତି ଉପହାର ମିଳିଥିଲା ।

ସେ ଲଣ୍ଡନରେ ସାର ଏଡୱିନ୍ ଆରନୋଲ୍ଡ (Sir Edwin Arnold) ଓ ମିସେସ ଆନିବେସାନ୍ତ (Mrs. Anniebesant)ଙ୍କୁ ସାକ୍ଷାତ କରିଥିଲେ । ପରବର୍ତ୍ତୀ ସମୟରେ ସେମାନେ ତାଙ୍କର ଘନିଷ୍ଠ ବନ୍ଧୁ ହୋଇପାରିଥିଲେ ।

୧୮୯୪ ମସିହାରେ ସେ କଲମ୍ବୋ ଯାତ୍ରା କରିଥିଲେ । ସେଠାରେ ସେ ସିଂହଳର ଧନୀ ବୌଦ୍ଧମାନଙ୍କୁ ବୁଦ୍ଧଗୟାର ମହାବୋଧି ଗ୍ରାମ କ୍ରୟ କରିବା ନିମନ୍ତେ ପ୍ରଭାବିତ କରିଥିଲେ । ସେପ୍ଟେମ୍ବର ମାସରେ କଲମ୍ବୋରେ "ମହାବୋଧି ଫଣ୍ଡ" ସୃଷ୍ଟି କରିବାରେ ସେ ସକ୍ଷମ ହୋଇଥିଲେ ।

୧୮୯୪ ମସିହାରେ ଲଙ୍କାର ବୌଦ୍ଧମାନେ ସଂଗଠିତ ଭାବରେ ବୁଦ୍ଧଗୟା ଓ ଅନ୍ୟାନ୍ୟ ବୌଦ୍ଧ ତୀର୍ଥସ୍ଥଳୀକୁ ଯାତ୍ରା କରିଥିଲେ । ଏହି ତୀର୍ଥଯାତ୍ରୀର ମହିଳାମାନେ ପ୍ରଥମଥର ପାଇଁ ଲୁଗା ପିନ୍ଧିବା ଆରମ୍ଭ କରିଥିଲେ ।

ଅନଗାରିକ ଧର୍ମପାଳ ଯେଉଁ ବୁଦ୍ଧମୂର୍ତ୍ତି ଜାପାନରୁ ଆଣିଥିଲେ, ସେ ସେଇ ସୁନ୍ଦର ମୂର୍ତ୍ତିଟିକୁ ବୁଦ୍ଧଗୟାର ମୁଖ୍ୟ ବେଦୀରେ ପ୍ରତିଷ୍ଠା କରିଥିଲେ । କିନ୍ତୁ ଏହି ବୁଦ୍ଧମୂର୍ତ୍ତି ବେଦୀରେ ପ୍ରତିଷ୍ଠା ହେଲାପରେ ନିଜକୁ ସେହି ମନ୍ଦିରର ମାଫିତଦାର ବୋଲାଉଥିବା ମହନ୍ତଙ୍କ ଭୃତ୍ୟ ତାହାକୁ ଯୋରଦବରଦସ୍ତି ବେଦୀରୁ ଅପସାରଣ କରି ବାହାରକୁ ଫିଙ୍ଗି ଦେଇଥିଲା । ଏହି ଘଟଣା ସମସ୍ତ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ଘୋର ମାନସିକ ଯନ୍ତ୍ରଣା ଦେଇଥିଲା । ତେଣୁ ୧୮୯୫ ମସିହା ଫେବୃୟାରୀ ମାସରେ ପୂଜାରେ ଆଘାତ ଘଟାଉଥିବା ମହନ୍ତଙ୍କର ଲୋକମାନଙ୍କ ବିରୁଦ୍ଧରେ ଗୋଟିଏ କେସ୍ ଦାୟର କରାଗଲା । ଆନ୍ତର୍ଜାତିକ ସ୍ତରରେ ଖ୍ୟାତ ଏହା ପ୍ରଖ୍ୟାତ ବୁଦ୍ଧଗୟା କେସର ଶୁଣାଣିର ଅୟମାରମ୍ଭ ମାତ୍ର ।

ଜାପାନର ଏହି ବୁଦ୍ଧମୂର୍ତ୍ତି ବୁଦ୍ଧଗୟାର ବର୍ମା ଗେଷ୍ଟହାଉସରେ ୧୯୧୦ ପର୍ଯ୍ୟନ୍ତ ରଖାଗଲା । ପରେ କଲିକତା ହାଇକୋର୍ଟର ନିର୍ଦ୍ଦେଶାନୁଯାୟୀ ଏହା କଲିକତାକୁ ଅଣାଯାଇଥିଲା । ବର୍ତ୍ତମାନ ଏହି ବୁଦ୍ଧମୂର୍ତ୍ତି ଶ୍ରୀ ଧର୍ମରାଜିକା ବିହାର, କଲିକତାରେ ରଖାଯାଇଛି ।

ଏହି ମକଦ୍ଦମା କୋର୍ଟର ବିଚାରାଧୀନ ଥିଲାବେଳେ ଅନଗାରିକ ଧର୍ମପାଳ ଭାରତରେ ବୌଦ୍ଧଧର୍ମର ପ୍ରଚ୍ଚାର ପାଇଁ ସମସ୍ତ ପ୍ରକାର ଉଦ୍ୟମ ଅବ୍ୟାହତ ରଖିଲେ ।

ପ୍ରାୟ ଚବିଶ ଶହ ବର୍ଷର ଦୀର୍ଘ ବ୍ୟବଧାନ ପରେ ଶାକ୍ୟ ମୁନିଙ୍କର ଆବିର୍ଭାବ, ଜ୍ଞାନୋଦୟ ଓ ତିରୋଧାନ ଦିବସକୁ ସ୍ମରଣୀୟ କରିବା ପାଇଁ ସେ ଭାରତରେ ପ୍ରଥମ ଥର ପାଇଁ କଲିକତା ସହରରେ ମେ' ୧୯୦୬ ମସିହାରେ ବୈଶାଖ ମହୋତ୍ସବ ଆରମ୍ଭ କରିଥିଲେ ଓ ଏକ ସଭାର ମଧ୍ୟ ଆୟୋଜନ କରିଥିଲେ । ଏଥିରେ

ଭାରତର ବିଭିନ୍ନ ପ୍ରାନ୍ତରୁ ବିଦ୍ୱାନ ବ୍ୟକ୍ତି, ଗୋଷ୍ଠୀମୁଖ୍ୟ ତଥା ବୌଦ୍ଧଭିକ୍ଷୁମାନେ ଯୋଗଦାନ କରିଥିଲେ ।

ସେତେବେଳକୁ ଶିକ୍ଷା ଓ ପ୍ରକାଶନ କାର୍ଯ୍ୟପାଇଁ ମିସେସ୍ ମେରି ଫୋଷ୍ଟର ତାଙ୍କର ଅର୍ଥ ପଠାଇବା ଆରମ୍ଭ କରିଦେଇଥିଲେ ।

୧୮୯୬ରୁ ୧୯୦୧ ପର୍ଯ୍ୟନ୍ତ ଅନଗାରିକ ଧର୍ମପାଳ ତାଙ୍କର ଅଧିକାଂଶ ସମୟ ଆମେରିକା ଓ ଅନ୍ୟଦେଶମାନଙ୍କରେ ବିତାଉଥିଲେ ମଧ୍ୟ ବୁଦ୍ଧଗୟାର ମକଦ୍ଦମା ସମ୍ପର୍କରେ ବୁଝୁଥିଲେ ।

୧୯୦୧ ଅକ୍ଟୋବର ମାସରେ ଲେଫଟନାଣ୍ଟ ଗଭର୍ଣ୍ଣର ଉଡ଼ବର୍ଣ୍ଣ (Lt. Governor Woodburn) ବୁଦ୍ଧଗୟା ପରିଦର୍ଶନ କଲେ । ମହାବୋଧି ସୋସାଇଟିର ଅନୁରୋଧ ରକ୍ଷାକରି ବୌଦ୍ଧ ତୀର୍ଥଯାତ୍ରୀଙ୍କ ରହିବା ପାଇଁ ସେ ଧର୍ମପାଳ ଗେଷ୍ଟ ହାଉସ ନିର୍ମାଣ ନିମନ୍ତେ ଜମି ଖଣ୍ଡିଏ ପ୍ରଦାନ କଲେ ।

ଏହି ସମୟରେ ମହାବୋଧି ମନ୍ଦିର ଉଭୟ ସରକାର ଓ ମହନ୍ତଙ୍କ ଦ୍ୱୈତ ନିୟନ୍ତ୍ରଣରେ ରହିଲା । ମାତ୍ର ମନ୍ଦିରରେ ପୂଜା କରିବା ପାଇଁ ବୌଦ୍ଧଭିକ୍ଷୁମାନଙ୍କୁ ସ୍ୱାଧୀନତା ପ୍ରଦାନ କରାଗଲା । ମହାବୋଧି ଧର୍ମଶାଳାରେ ବୌଦ୍ଧଭିକ୍ଷୁମାନେ ଅବସ୍ଥାନ କରୁଥିଲେ, କାରଣ ସେଠାରେ ସେମାନଙ୍କର ରହିବାର ନିହାତି ପ୍ରୟୋଜନ ଥିଲା ।

ଏହା ଏଠାରେ ଉଲ୍ଲେଖ କରିବା ଏକାନ୍ତ ଆବଶ୍ୟକ ଯେ ଯେତେବେଳେ ଅନଗାରିକ ଧର୍ମପାଳ ୧୯୦୧ରେ ସାରନାଥକୁ ଆସିଥିଲେ, ଏହାର ଅବସ୍ଥା ଶୋଚନୀୟ ଥିଲା । ସାରନାଥ ଏକ ପବିତ୍ରସ୍ଥଳୀ । ଏଠାରେ ଶାକ୍ୟମୁନି ବୁଦ୍ଧ ତାଙ୍କର ପ୍ରଥମ ଉପଦେଶ ତାଙ୍କର ପାଞ୍ଚଜଣ ଶିଷ୍ୟ କୋଣ୍ଡନ୍ନା, ଭଦ୍ଦୋ, ଭାଦ୍ଦିୟା, ମାହାନାମା ଓ ଆଶାଜୀଙ୍କୁ ଶୁଣାଇଥିଲେ ।

ସେ ଦେଖିଲେ, ଏହି ପୁଣ୍ୟସ୍ଥଳୀ ସ୍ଥାନୀୟ ଲୋକଙ୍କ ଦ୍ୱାରା ଘୁଷୁରି ପ୍ରଜନନ କେନ୍ଦ୍ର ଭାବରେ ବ୍ୟବହୃତ ହେଉଛି ଏବଂ ଏହି ସୁନ୍ଦର ସ୍ତୁପର ଇଟା ସବୁ ଘର ଓ ପୋଲ ତିଆରି ନିମନ୍ତେ ଶଗଡ଼ ଗାଡ଼ିରେ ବୁହା ଚାଲିଛି । ବୌଦ୍ଧମାନଙ୍କର ଏହି ପୁଣ୍ୟସ୍ଥଳୀର ଚରମ ଅବହେଳା ଦେଖି ସେ ମର୍ମାହତ ହୋଇପଡ଼ିଥିଲେ ।

ଅନଗାରିକ ଧର୍ମପାଳ ଏହି ପବିତ୍ରସ୍ଥଳୀର ରକ୍ଷଣାବେକ୍ଷଣ ତଥା ସଂରକ୍ଷଣ ନିମନ୍ତେ ବନାରସର ଜିଲ୍ଲାପାଳଙ୍କୁ ସାଙ୍ଗେ ସାଙ୍ଗେ ଏକ ପତ୍ର ଲେଖିଥିଲେ ।

ତାଙ୍କ ପତ୍ରରେ ସେ ଉଲ୍ଲେଖ କରିଥିଲେ, "ମୁଁ ଗତକାଲି ସେହି ସ୍ଥାନ ପରିଦର୍ଶନ କଲି । ଏହା ମୋର ଦୃଷ୍ଟିଗୋଚର ହେଲା ଯେ, ସବୁଗୁଡ଼ିକ ଯେମିତି ଚରମ ଅବହେଳା ଅବସ୍ଥାରେ ପଡ଼ିରହିଛି । ଯେଉଁଠାରେ ଏକଦା ହଳଦୀ ରଙ୍ଗ ଚିକ୍ ଚିକ୍ କରୁଥିଲା

ସେଠାରେ ନିର୍ଜ୍ଜନତା ରାଜୁତି କରୁଛି । ଯେଉଁଠାରେ ଭକ୍ତମାନେ ପବିତ୍ର ବାଡ଼ ମଧ୍ୟରେ ପାତାୟତ କରୁଥିଲେ, ବର୍ତ୍ତମାନ ଗାଁର ଘୁଷୁରି ସବୁ ସେଠାରେ ବସତି ଜମାଇଛନ୍ତି । ଯେଉଁପରି ଖ୍ରୀଷ୍ଟିୟାନଙ୍କ ପାଇଁ ଜେରୁଜେଲମ, ମୁସଲମାନଙ୍କ ପାଇଁ ମକ୍କା ପବିତ୍ରସ୍ଥଳୀ, ସେହିପରି ୪ କୋଟି ୭୫ ଲକ୍ଷ ବୌଦ୍ଧମାନଙ୍କ ପାଇଁ ସାରନାଥର ମୃଗବିହାର ପବିତ୍ର ତୀର୍ଥସ୍ଥଳୀ ଅଟେ ।"

ପୁନଶ୍ଚ ସେ ଉଲ୍ଲେଖ କରିଥିଲେ, "ଆପଣ ମହାନୁଭବତା ଓ ଉଦାର ହୃଦୟରେ ଏହାକୁ ଗ୍ରହଣ କରି ସ୍ତୁପ ମଧ୍ୟରେ ଥିବା ଜମିକୁ ଦୟାକରି ମହାବୋଧି ସୋସାଇଟିକୁ ପ୍ରଦାନ କରନ୍ତୁ । ମୁଁ ଅବଗତ, ଏହା ଏକ ସରକାରୀ ଜମି ଅଟେ ।"

"ଏହା ଆପଣଙ୍କୁ ପ୍ରତିଶ୍ରୁତି ଦେବା ନିଷ୍ପ୍ରୟୋଜନ, ୪ କୋଟି ୭୫ ଲକ୍ଷ ବୌଦ୍ଧମାନଙ୍କର ଯାହା ଏକମାତ୍ର ଅଭିଳାଷ, ଆପଣ ଯଦି ତାହା ମଞ୍ଜୁର କରିବେ, ଆପଣଙ୍କର ନାମ ବୌଦ୍ଧ ଇତିହାସରେ ଏହି ପବିତ୍ର ପୀଠର ମୁକ୍ତିଦାତା ଭାବରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଓ ଏସିଆର ବୌଦ୍ଧମାନେ ଆପଣଙ୍କ ପାଖରେ ଚିରକୃତଜ୍ଞ ରହିବେ । କାରଣ ଏହି ପବିତ୍ରସ୍ଥଳୀ ସହ ବୌଦ୍ଧ ଶ୍ରବଣମାନଙ୍କର ନିବିଡ଼ ଭାବଗତ ସମ୍ପର୍କ ରହିଅଛି ।"

ମାତ୍ର ସରକାରଙ୍କଠାରୁ ସେହି ଜମି ପାଇବା ପୂର୍ବରୁ ସାରନାଥ ମୃଗବିହାର ପାଖରେ ଏକ ମୁଖ୍ୟ ସ୍ଥାନରେ ସେ ଜମି କ୍ରୟ କରିଥିଲେ । କିନ୍ତୁ ଏହି ଜମି କ୍ରୟ କଲାପରେ ଏହା ବିରୁଦ୍ଧରେ ସରକାରୀ କର୍ମଚାରୀମାନେ ଅନେକ ଆପତ୍ତି ଉଠାଇଥିଲେ ।

ପୁନରାୟ ୧୯୦୨ରୁ ୧୯୦୪ ଅନଗାରିକ ଧର୍ମପାଳ ଜାପାନ, ଆମେରିକା, ଲଣ୍ଡନ, ହଲାଣ୍ଡ, ଡେନମାର୍କ, ଇଟାଲି ଭ୍ରମଣ କରି ଶାକ୍ୟମୁନି ବୁଦ୍ଧଙ୍କର ସେହି ପବିତ୍ର ଧର୍ମ ପ୍ରଚାର କଲେ ଏବଂ ବୁଦ୍ଧଗୟା, ସାରନାଥ ଓ ଅନ୍ୟାନ୍ୟ ବୌଦ୍ଧ ପୀଠସ୍ଥଳୀର ବିକାଶ ପାଇଁ ସେ ଅର୍ଥ ସଂଗ୍ରହ ଆରମ୍ଭ କଲେ । ଆମେରିକା ଓ ଇଂଲଣ୍ଡ ଭ୍ରମଣ ସମୟରେ ବୈଷୟିକ ବିଦ୍ୟାଳୟମାନଙ୍କରେ କେଉଁ ବିଷୟ ସବୁ ପଢ଼ାଯାଉଛି ଓ କିପରି ବାସ୍ତବ ତାଲିମ ଦିଆଯାଉଛି ତାହା ଅନୁଧ୍ୟାନ କରିଥିଲେ । ସାରନାଥଠାରେ ସେ ଗୋଟିଏ ଶିଳ୍ପ ତାଲିମ କେନ୍ଦ୍ର (Industrial School) ପ୍ରତିଷ୍ଠା କରିଥିଲେ ଏବଂ ଜଣେ ଆମେରିକୀୟ ବିଶାରଦ ମିଷ୍ଟର ଭିଗାର୍ସ (Mr. Viggars)ଙ୍କ ତତ୍ତ୍ୱାବଧାନରେ ଏହି ଅନୁଷ୍ଠାନଟି ସୁଚାରୁରୂପେ ପରିଚାଳିତ ହୋଇଥିଲା । ଶିଳ୍ପ ସହିତ କୃଷିର ବିକାଶ ପାଇଁ କୃଷକମାନଙ୍କୁ ଆଧୁନିକ ପ୍ରଣାଳୀରେ ଚାଷ କରିବାକୁ ସାରନାଥଠାରେ ସେ ତାଲିମ ପ୍ରଦାନର ବ୍ୟବସ୍ଥା କରିଥିଲେ । ଏକ ସାମାଜିକ ସଚେତନତା ସୃଷ୍ଟି କରିବା ପାଇଁ ସେ ପାଦରେ, ଶଗଡ଼ ଗାଡ଼ିରେ ଗାଁକୁ ଗାଁ ଓ ବିଭିନ୍ନ ସହର ବୁଲି ଧର୍ମ

ସମ୍ବନ୍ଧୀୟ ବକ୍ତୃତା ସହିତ ଶିଳ୍ପର ଅଗ୍ରଗତି ଓ ବୈଷୟିକ ଶିକ୍ଷା ସମ୍ବନ୍ଧରେ ଲୋକଙ୍କୁ ପ୍ରବର୍ତ୍ତାଉଥିଲେ ।

୧୯୦୪ରେ ସେ କଲମ୍ବୋ ଯାତ୍ରା କରିଥିଲେ ଓ ଜୁଲାଇରେ ସେ ସାରନାଥକୁ ଫେରି ସେଠାରେ ଯୁବକମାନଙ୍କ ନିମନ୍ତେ ଏକ ବୈଷୟିକ ବିଦ୍ୟାଳୟ ସ୍ଥାପନ କରିଥିଲେ ।

ଯେଉଁ ମହାବୋଧି ପତ୍ରିକାର ପ୍ରକାଶନ ୧୯୦୨ ମସିହାରେ ଆରମ୍ଭ ହୋଇଥିଲା, ଇତି ମଧ୍ୟରେ ଏହା ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିଲା ଏବଂ ଭାରତ ଓ ଭାରତ ବାହାରେ ଏହା ବହୁଳ ପ୍ରଚାରିତ ଥିଲା । ଏହି ପତ୍ରିକା ଓ ଅନ୍ୟ ପ୍ରକାଶନ ବ୍ୟତୀତ ଅନଗାରିକ ଧର୍ମପାଳ କଲିକତା ବିଶ୍ୱବିଦ୍ୟାଳୟରେ ପାଲିଭାଷା ଶିକ୍ଷାଦାନ ପାଇଁ କାର୍ଯ୍ୟାରମ୍ଭ କରିଥିଲେ । ବୌଦ୍ଧଧର୍ମ ପ୍ରଚାର ପାଇଁ ଏହା ଏକ ପ୍ରମୁଖ ପଦକ୍ଷେପ ଥିଲା ।

୧୯୦୬ରେ ସେ ବହୁବାର କଲମ୍ବୋ ଯାତ୍ରା କରିଥିଲେ ଏବଂ ସିଂହଳ ବୌଦ୍ଧାଳୟ, ମହାବୋଧି ମୁଦ୍ରଣାଳୟ ଏବଂ ହିନ୍ଦୁମା ଓ କଲମ୍ବୋରେ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏ ସମସ୍ତ କାର୍ଯ୍ୟ ନିମନ୍ତେ ହୋନୋଲୁଲୁର ମିସେସ ଫୋରଷ୍ଟର (Mrs. Forster) ଅର୍ଥ ପ୍ରଦାନ କରିଥିଲେ ।

୧୯୦୭ ମସିହାରେ ବୁଦ୍ଧଗୟା ମନ୍ଦିର ମକଦ୍ଦମାରେ କେତେକ ବିପର୍ଯ୍ୟୟ ଦେଖାଦେଲା । ତଥାପି ଅନଗାରିକ ଧର୍ମପାଳ ସାହସ ଓ ବିଶ୍ୱାସର ସହ ନ୍ୟାୟ ପାଇବା ପାଇଁ ତାଙ୍କର ଲଢ଼େଇ ଅବ୍ୟାହତ ରଖିଥିଲେ ।

ଅନଗାରିକ ଧର୍ମପାଳ ଯେଉଁ ମହତ୍‌କାର୍ଯ୍ୟଗୁଡ଼ିକ ଆରମ୍ଭ କରିଥିଲେ, ସେ ସେଥିରେ ପରମ ସନ୍ତୋଷ ଲାଭ କରିଥିଲେ ଓ କଲିକତାରେ ମହାବୋଧି ସୋସାଇଟି ସ୍ଥାପନ ନିମନ୍ତେ ଘର କିଣିବା ପାଇଁ ଅର୍ଥ ପ୍ରଦାନ କରିଥିଲେ । ତଦନୁଯାୟୀ ଜୁଲାଇ ୧୯୦୮ ମସିହାରେ କଲିକତାର କେନ୍ଦ୍ରସ୍ଥଳରେ ବେଣୀଆପୁକୁର ଲେନ୍‌ରେ ଗୋଟିଏ ଘର କିଣା ହୋଇଥିଲା ।

୧୯୧୨ରୁ ୧୯୧୫ ମସିହା ପର୍ଯ୍ୟନ୍ତ ଅନଗାରିକ ଧର୍ମପାଳ ତାଙ୍କର ଅଧିକାଂଶ ସମୟ ଶ୍ରୀଲଙ୍କାରେ ବିତେଇଥିଲେ । ସେ ଶ୍ରୀଲଙ୍କାରେ ଜାତୀୟ ପୁନର୍ଜାଗରଣ ଆନ୍ଦୋଳନ ଆରମ୍ଭ କରିଥିଲେ ଓ ସିଂହଳୀ ବୌଦ୍ଧମାନଙ୍କ ମଧ୍ୟରେ ଜାତୀୟ ପ୍ରେମ ଜାଗ୍ରତ କରିବା ନିମନ୍ତେ ସିଂହଳର ଚାରିଆଡ଼େ ଭ୍ରମଣ କଲେ । ସେ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜନମତ ସୃଷ୍ଟି କରିବା ପାଇଁ ଶଗଡ଼ ଗାଡ଼ିରେ ଗାଁକୁ ଗାଁ ବୁଲିବାରେ ଲାଗିଲେ । ସେ ଜାତିର ମହାନ ବୀରପୁରୁଷ ପାଲଟିଗଲେ । ତାଙ୍କୁ ତାଙ୍କ ରାଜ୍ୟବାସୀମାନେ ଲଙ୍କାର ସିଂହ ଭାବରେ ଅଭିହିତ କରିଥିଲେ ।

ଏହି ସମୟରେ ସେ ଫୋଷ୍ଟର ରବିନସନ ହସପିଟାଲ ଓ ମହାବୋଧି ମହାବିଦ୍ୟାଳୟ କଲମ୍ବୋର ଡାର୍ଲିଲେନ୍‌ର ମଲ୍ଲିକା ସନ୍ଧଗରାଠାରେ ସ୍ଥାପନ କଲେ ।

୧୯୧୫ ମେ ମାସରେ ସିଂହଳୀ ଓ ମୁସଲମାନଙ୍କ ମଧ୍ୟରେ ଦଙ୍ଗା ଆରମ୍ଭ ହୋଇଗଲା । ଏହା ଇୟୁରୋପରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେବାର ଗୋଟିଏ ବର୍ଷପରର ଘଟଣା ।

ବ୍ରିଟିଶ କର୍ତ୍ତୃପକ୍ଷ ଜାଣିପାରିଲେ ଯେ ହେୱାୱିଥରନା ପରିବାରରେ ଗଭୀର ସିଂହଳ ବୌଦ୍ଧ ଭାବପ୍ରବଣତା ରହିଛି, ତେଣୁ ସେମାନେ ସେହି ଦାମ୍ଭିକତାକୁ ଭାଙ୍ଗିଦେବାକୁ ଗୃହିଁଲେ । ସେମାନେ ଅନଗାରିକର ସାନଭାଇ ଏଡ଼ମଣ୍ଡ (Edmund)କୁ ଗିରଫ କଲେ । ତାକୁ ଦେଶଦ୍ରୋହ ପାଇଁ କୋର୍ଟ ମାର୍ଶିଆଲ (Court Martial) ଆଇନରେ ବିଗ୍ୱର କଲେ ଓ ଦୋଷୀ ଭାବରେ ସାବ୍ୟସ୍ତ କରି ତାକୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କଲେ । ଏଡ଼ମଣ୍ଡ ଜେଲ୍‌ରେ ଥିଲାବେଳେ ମୃତ୍ୟୁବରଣ କଲେ ।

ଶ୍ରୀଲଙ୍କାରେ ଇଂରେଜୀ ଶାସକମାନଙ୍କ ଦ୍ୱାରା ଗିରଫ ଏଡ଼ାଇବାପାଇଁ ଅନଗାରିକଙ୍କୁ ତୁରନ୍ତ ଭାରତ ଗ୍ୱଲିଯିବାକୁ ପରାମର୍ଶ ଦିଆଗଲା । ମାତ୍ର ଯେତେବେଳେ ସେ କଲିକତାରେ ପହଞ୍ଚିଲେ, ଶ୍ରୀଲଙ୍କାର ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ଅନୁରୋଧରେ ଭାରତରେ ତାଙ୍କୁ ପାଞ୍ଚବର୍ଷ ପାଇଁ ଗୃହବନ୍ଦୀ କରି ରଖାଗଲା ।

ସେ ଏହି ପାଞ୍ଚବର୍ଷ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ନିଜକୁ ନିୟୋଜିତ ରଖି କଲିକତାରେ ଧର୍ମରାଜିକା ବିହାର ନିର୍ମାଣ କରିପାରିଥିଲେ ।

୧୯୧୫ ମସିହାରେ ଭାରତର ମହାବୋଧି ସୋସାଇଟି ପଞ୍ଜିକୃତ ଅନୁଷ୍ଠାନ ହୋଇପାରିଲା । (ସଂଖ୍ୟା ଏସ୍/୨୬୬୬/୬୧-୧୯୧୫/୧୬) ଏକ ପରିଗ୍ୱଳନା କମିଟି ଗଠନ କରାଗଲା । କଲିକତା ହାଇକୋର୍ଟର ମୁଖ୍ୟ ବିଗ୍ୱରପତି, କଲିକତା ବିଶ୍ୱବିଦ୍ୟାଳୟର କୁଳପତି, ଭାରତରେ ଉଚ୍ଚଶିକ୍ଷାର ପ୍ରବର୍ତ୍ତକ ଶ୍ରୀ ଆଶୁତୋଷ ମୁଖାର୍ଜୀ ଏହାର ସଭାପତି ରହିଲେ । ଅନଗାରିକ ଧର୍ମପାଳ ଏହାର ସାଧାରଣ ସଂପାଦକ ଭାବରେ ନିର୍ବାଚିତ ହେଲେ ।

୧୯୧୫ ଜୁଲାଇ ମାସରେ ସେ କଲିକତାର କଲେଜ ଷ୍ଟ୍ରୀଟ୍‌ରେ ଗୋଟିଏ ଜମି କିଣିଲେ । ଯେତେବେଳେ ଭାରତ ସରକାର ଇଚ୍ଛା ପ୍ରକଟ କଲେ ଯେ ଯଦି ମହାବୋଧି ସୋସାଇଟି କଲିକତାରେ ଗୋଟିଏ ଉପଯୁକ୍ତ ମନ୍ଦିର ନିର୍ମାଣ କରିପାରିବ ତା'ହେଲେ ସେ ଶାକ୍ୟ ମୁନିଙ୍କ ପବିତ୍ର ଦେହାବଶେଷ ତାକୁ ଅର୍ପଣ କରିବେ । ଅନଗାରିକ ଧର୍ମପାଳ ଏହି ପ୍ରସ୍ତାବରେ ସମ୍ମତି ପ୍ରଦାନ କଲେ ଓ ଜୁଲାଇ ୧୮ରେ ଏହି ବିହାରର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ଡିସେମ୍ବର ୬ ତାରିଖରେ ଏହାର ଭିତ୍ତିପ୍ରସ୍ତର ସ୍ଥାପନ ହୋଇଥିଲା ।

୧୯୨୦ ମସିହାରେ ବିହାରର ନିର୍ମାଣ କାର୍ଯ୍ୟ ଶେଷ ହେଲା । ଅନଗାରିକଙ୍କ ପୋଷ୍ୟ ମାତା ମିସେସ୍ ମେରି ଫୋଷ୍ଟର ଏଥିପାଇଁ ସର୍ବାଧିକ ଅର୍ଥ ପ୍ରଦାନ କରିଥିଲେ । ସେ ଏଥିନିମନ୍ତେ ଟ୬୩,୬୦୬ଙ୍କା ଓ ବରୋଦାର ମହାରାଜା ଟ୫୬୮୫ଙ୍କା, ବିର୍ଲାଙ୍କ ଭାଇମାନେ ଟ୫୦୦୦ଙ୍କା ଏହି ବିହାର ଫଣ୍ଡକୁ ପ୍ରଦାନ କରିଥିଲେ ।

ଗୋଟିଏ ବର୍ଣ୍ଣାଢ୍ୟ ଉତ୍ସବରେ ୧୯୨୦ ମସିହା ନଭେମ୍ବର ୨୦ ତାରିଖରେ ଶ୍ରୀଧର୍ମରାଜିକା ବିହାର ଉଦ୍‌ଘାଟିତ ହୋଇଥିଲା ।

ବର୍ମା, ସିଂହଳ, ଗୃଇନା, ଜାପାନ, ଶ୍ୟାମ (ଥାଇଲାଣ୍ଡ) ଓ ଭାରତର ବୌଦ୍ଧଭିକ୍ଷୁଙ୍କ ସହ ପ୍ରାୟ ଦୁଇହଜାର ଲୋକଙ୍କର ଏକ ବର୍ଣ୍ଣାଢ୍ୟ ଶୋଭାଯାତ୍ରାରେ ମହାବୋଧି ସୋସାଇଟି ଭାରତର ସଭାପତି ସାର୍ ଆଶୁତୋଷ ମୁଖାର୍ଜୀ, ଅନଗାରିକ ଧର୍ମପାଳ ଓ ମିସେସ୍ ଆନିବେଶାନ୍ତ ରାଜଭବନରେ ପହଞ୍ଚିଲେ । ବଙ୍ଗଳାର ରାଜ୍ୟପାଳ ମହାମହିମ ଲର୍ଡ ରୋନାଲ୍‌ଡସାୟ (Lord Ronaldshay) ଏକ କାରୁକାର୍ଯ୍ୟଖଚିତ ସ୍ଫଟିକ ପେଟିକାରେ ରଖାଯାଇଥିବା ଶାକ୍ୟମୁନି ବୁଦ୍ଧଙ୍କର ଦେହାବଶେଷ ସାର୍ ଆଶୁତୋଷ ମୁଖାର୍ଜୀଙ୍କୁ ଅର୍ପଣ କଲେ । ସେ ତାହା ଅନଗାରିକ ଧର୍ମପାଳଙ୍କୁ ଅର୍ପଣ କଲେ । ଧର୍ମପାଳ ତାହା ଛଅଟି ଘୋଡ଼ା ଟାଣୁଥିବା ଏକ ଗାଡ଼ି ଉପରେ ରଖାଯାଇଥିବା ସିଂହାସନ ଉପରେ ସ୍ଥାପିତ କଲେ । ତାହାପରେ ଶୋଭାଯାତ୍ରା ଧର୍ମରାଜିକା ବିହାରକୁ ପ୍ରତ୍ୟାବର୍ତ୍ତନ କଲା । ସେଠାରେ ଶାକ୍ୟମୁନି ବୁଦ୍ଧଙ୍କର ଦେହାବଶେଷ ସ୍ୱତନ୍ତ୍ରଭାବେ ପ୍ରସ୍ତୁତ ହୋଇଥିବା ସ୍ତୁପ ମଧ୍ୟରେ ସମାଧିସ୍ଥ କରାଗଲା ।

ସନ୍ଧ୍ୟାରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଉପସ୍ଥିତିରେ ଲର୍ଡ ରୋନାଲ୍‌ଡସାୟଙ୍କ ସଭାପତିତ୍ୱରେ ବିହାରର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଲା ।

କଲିକତା ଅନଗାରିକ ଧର୍ମପାଳଙ୍କର ସମସ୍ତ କାର୍ଯ୍ୟକ୍ରମର କେନ୍ଦ୍ରବିନ୍ଦୁ ଥିଲା । ସେହି କଲିକତାରେ ଗୋଟିଏ ବିହାର ନିର୍ମାଣ କରିବାର ତାଙ୍କର ବହୁଦିନର ଇଚ୍ଛା ଶେଷରେ ଫଳବତୀ ହେଲା ।

୧୯୨୨ ମସିହାରେ ଅନଗାରିକଙ୍କୁ ଇଂରେଜ ସରକାର କଲିକତା ସହର ମଧ୍ୟରେ ଯେଉଁ ସୀମାବଦ୍ଧ କରି ରଖିଥିଲେ, ସେଥିରୁ ଖଲାସ କରିଦେଲେ ଓ ତାଙ୍କୁ ଭାରତ ବାହାରକୁ ଯିବାକୁ ଅନୁମତି ପ୍ରଦାନ କଲେ । ସେତେବେଳକୁ ଅନଗାରିକଙ୍କ ପ୍ରମୁଖ ଶିଷ୍ୟ ଦେବପ୍ରିୟ ଭଲିସିଂହେ (Devapriya Valisinghe) ତାଙ୍କର ଗୁରୁଙ୍କ ପ୍ରତ୍ୟେକ ଇଚ୍ଛାକୁ ସଫଳ କରିବାକୁ କଠିନ ପରିଶ୍ରମ କରୁଥିଲେ ।

ଧର୍ମରାଜିକା ବିହାରର ନିର୍ମାଣ କାର୍ଯ୍ୟ ତଦାରଖ କରୁଥିବା ବେଳେ ଉଭୟ ଅନଗାରିକ ଓ ଦେବପ୍ରିୟ ଭଲିସିଂହେ, ପ୍ରତ୍ନତତ୍ତ୍ୱ କର୍ତ୍ତୃପକ୍ଷ ଓ ଇଂରେଜ ସରକାରୀ

କର୍ମଚାରୀଙ୍କ ସହ ସାରନାଥରେ ଗୋଟିଏ ମନ୍ଦିର ନିର୍ମାଣ ନିମନ୍ତେ ଜମି ଖଣ୍ଡିଏ ପାଇଁ ଆଲୋଚନା ଆରମ୍ଭ କରିଦେଲେ । କାରଣ ଏହି ସାରନାଥଠାରେ ହିଁ ବୁଦ୍ଧ ପ୍ରଥମେ ତାଙ୍କର ଉପଦେଶ ପ୍ରଦାନ କରିଥିଲେ । ୧୯୦୧ ମସିହାରେ ଅନଗାରିକ ଯେଉଁ ଜମି ଖଣ୍ଡିକ କ୍ରୟ କରିଥିଲେ ତାହା ବିବାଦୀୟ ହୋଇଉଠିଥିଲା । ଯାହାହେଉ, ମନ୍ଦିର ନିର୍ମାଣ ନିମନ୍ତେ ସେ ଜମି ଖଣ୍ଡିଏ ଯୋଗାଡ଼ କରିପାରିଲେ ।

୧୯୧୬ ମସିହା ଜୁନ ୩୦ ତାରିଖରେ ଭାରତ ସରକାର ବଙ୍ଗଳା ସରକାରଙ୍କ ମାଧ୍ୟମରେ (ପତ୍ର ସଂଖ୍ୟା ୧୦୨୨ ତା୩୧.୭.୧୯୨୧, ଜେନେରାଲ ଡିପାର୍ଟମେଣ୍ଟ ମିସିଲିନିଅସ ବ୍ରାଞ୍ଚ) ମହାବୋଧି ସୋସାଇଟିକୁ ଜଣାଇଲେ ଯେ ଯଦି ମହାବୋଧି ସୋସାଇଟି ସାରନାଥରେ ମନ୍ଦିର ନିମନ୍ତେ ଏକ ଗୃହ ନିର୍ମାଣ କରିପାରିବେ, ତାହାହେଲେ ଭାରତ ସରକାର ଶାକ୍ୟମୁନି ବୁଦ୍ଧଙ୍କ ଦେହାବଶେଷ ମହାବୋଧି ସୋସାଇଟିକୁ ହସ୍ତାନ୍ତର ନିମନ୍ତେ ପ୍ରସ୍ତୁତ ଅଛନ୍ତି ।

ସେତେବେଳେ ଯୁଦ୍ଧପାଇଁ ପ୍ରତିକୂଳ ଅବସ୍ଥା ଥିବାରୁ ସୋସାଇଟି ପ୍ରସ୍ତାବିତ ମନ୍ଦିର ନିର୍ମାଣ ନିମନ୍ତେ ସକ୍ଷମ ହୋଇପାରିଲା ନାହିଁ । ୧୯୨୦ ମସିହା ବେଳକୁ ଅବସ୍ଥା ସୁଧୁରିଗଲା ଓ ସୋସାଇଟି ଜମିରେ ମନ୍ଦିର ନିର୍ମାଣ କରାଇବା ନିମନ୍ତେ ନିଷ୍ପତ୍ତି ଗ୍ରହଣ କଲେ । ଯଦିଓ ଶାକ୍ୟମୁନି ବୁଦ୍ଧଙ୍କ ଦେହାବଶେଷକୁ ଏକ ମନ୍ଦିର ନିର୍ମାଣ କରି ସେଥିରେ ସଯତ୍ନରେ ରଖିବା ନିମନ୍ତେ ଭାରତ ସରକାରଙ୍କ ପତ୍ର ମହାବୋଧି ସୋସାଇଟି ପାଇଥିଲେ, ତଥାପି ଏଥିନିମନ୍ତେ ଚୂଡ଼ାନ୍ତ ମଞ୍ଜୁରୀ ପାଇବା ନିମନ୍ତେ ସୋସାଇଟିକୁ ଅନେକ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସୋସାଇଟି ଓ ସରକାରୀ କର୍ତ୍ତୃପକ୍ଷଙ୍କ ମଧ୍ୟରେ ଅନେକଗୁଡ଼ିଏ ବିବାଦ ଦେଖା ଦେଇଥିଲା । ଅନଗାରିକ ଧର୍ମପାଳଙ୍କ ବ୍ୟକ୍ତିଗତ ଶିଷ୍ୟ ଦେବପ୍ରିୟ ଭଲିସିଂହେ ଧୈର୍ଯ୍ୟର ସହିତ ଏ ସମସ୍ତ ବିବାଦର ସମ୍ମୁଖୀନ ହୋଇଥିଲେ ।

୧୯୨୨ ମସିହା ନଭେମ୍ବର ୩ ତାରିଖରେ ଯୁକ୍ତପ୍ରଦେଶର ରାଜ୍ୟପାଳ ମହାମାନ୍ୟ ସାର୍ ହରକୋର୍ଟ ବଟଲର (Sir Harcourt Butler)ଙ୍କ ଦ୍ୱାରା ବିହାରର ଭିତ୍ତି ସ୍ଥାପନ ପଡ଼ିଲା ।

ସାରନାଥରେ ମୂଳଗନ୍ଧାକୁଟି ବିହାରର ଭିତ୍ତିପ୍ରସ୍ତର ସ୍ଥାପନ ପରେ ପରେ, ବୌଦ୍ଧ କାର୍ଯ୍ୟକ୍ରମକୁ ପୁନର୍ଜୀବିତ କରିବା ନିମନ୍ତେ ଦ୍ୱିଗୁଣିତ ଉତ୍ସାହର ସହ କାର୍ଯ୍ୟ କରିବାକୁ ନିଷ୍ପତ୍ତି ଗ୍ରହଣ କରାଗଲା । ଭେନ୍ କୁମ୍ବଲୱେଲେ ସିରିନିୱାସ ଥେରୋ (Ven. Kumbalwelle Siriniwasa Thero) ସାରନାଥର ଆବାସିକ ସଭାପତି ହେଲେ । ଦେବପ୍ରିୟ ଭଲିସିଂହେ ତାଙ୍କ ପ୍ରଭୁଙ୍କଠାରୁ ସୋସାଇଟିର ସଂସ୍ଥାଗୁଡ଼ିକର ରକ୍ଷଣାବେକ୍ଷଣ ଓ ଏହାର କାର୍ଯ୍ୟକ୍ରମକୁ ସକ୍ରୀୟ କରିବାର ଦାୟିତ୍ୱ ନେଲେ । ସେ

ସାରନାଥର କାର୍ଯ୍ୟକ୍ରମ ତଦାରଖ କରିବା ନିମନ୍ତେ ସେଠାକୁ ବାରମ୍ବାର ଯାତ୍ରା କରୁଥିଲେ ।

ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଥିବା ବେଳେ ଏହାକୁ ପୁନରାୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ବନ୍ଦ କରିଦିଆଗଲା । ଏହା ସୋସାଇଟି ପାଇଁ ଗୋଟାଏ ବଡ଼ ଆହ୍ୱାନ ଥିଲା । ଅନଗାରିକ ଧର୍ମପାଳଙ୍କ ଭାଇ ଡଃ ହେୱାଭଇଥରନା ଓ ଦେବପ୍ରିୟ ଭଲିସିଂହେ ତକ୍ଷଶୀଳାକୁ ଯାଇ ସେଠାରେ ସାର ଜନ୍ ମାର୍ଶାଲଙ୍କୁ ସାକ୍ଷାତ କଲେ । ସାର ଜନ୍ ମାର୍ଶାଲ ସେମାନଙ୍କ କଥା ସବୁ ସହାନୁଭୂତିର ସହ ଶୁଣିଲେ ।

୧୯୨୬ ମସିହାରେ ସରକାର ଓ ସୋସାଇଟି ମଧ୍ୟରେ ଥିବା ବିବାଦ ନିମ୍ନୋକ୍ତ ସର୍ତ୍ତାନୁଯାୟୀ ସମାଧାନ ହେଲା-

(୧) ମୂଳୁଦୁଆ ପକାଇବା କାର୍ଯ୍ୟରେ ଯାହା ଖର୍ଚ୍ଚ କରାହୋଇଛି, ସରକାର ତାହା ଭରଣା କରିବେ ।

(୨) ସରକାର ପ୍ରସ୍ତାବିତ ବିହାର ପାଇଁ ଉପଯୁକ୍ତ ଜମି ଯୋଗାଇଦେବେ ।

ସରକାର ତାଙ୍କର ମହାନୁଭବତାରେ ସଦୟ ହୋଇ ୨୦ ଏକର ଜମି ଏଥିପାଇଁ ଯୋଗାଇଦେଲେ ଓ ସେଠାରେ ପାର୍କ କରିବା ପାଇଁ ସମସ୍ତ ଖର୍ଚ୍ଚ ବହନ କଲେ । ଏହି ପାର୍କ ବିହାରକୁ ସଂଲଗ୍ନ ହୋଇ ରହିବ ଓ ଏଥିରେ ଗଛ ସବୁ ରୋପଣ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

ମନ୍ଦିରର ନିର୍ମାଣ କାର୍ଯ୍ୟ ପୁନରାୟ ଆରମ୍ଭ ହୋଇଗଲା । ଏଥିନିମନ୍ତେ ମିସେସ୍ ମାରି ଫୋଷ୍ଟର, ଅନଗାରିକଙ୍କ ପରିବାରବର୍ଗ, ତାଙ୍କର ଭାଇ ଏବଂ ଭାରତ ଓ ଭାରତ ବାହାରୁ ଅନେକ ଶୁଭେଚ୍ଛୁ ଅର୍ଥ ଯୋଗାଇଦେଲେ ।

ଦେବପ୍ରିୟ ଭଲିସିଂହେ ବୌଦ୍ଧ ମିଶନ କାର୍ଯ୍ୟରେ ଯୋଗଦାନ ନିମନ୍ତେ ଇଂଲଣ୍ଡ ପାଇଥିବାରୁ ତାଙ୍କର ଅନୁପସ୍ଥିତିରେ ଅନଗାରିକଙ୍କ ଅନ୍ୟତମ ଶିଷ୍ୟ ମିଷ୍ଟର ପି. ପି. ସିରିଓର୍ଦ୍ଧନା (Mr. P. P. Siriwardhana) ମନ୍ଦିର ନିର୍ମାଣ କାର୍ଯ୍ୟର ତତ୍ତ୍ୱାବଧାନ କଲେ ।

ଏହି ସମୟରେ ଅନଗାରିକ ଧର୍ମପାଳ ଶ୍ରୀଲଙ୍କା ଯାତ୍ରା କଲେ ଓ ୧୯୧୫ ମସିହାରେ ସିଂହଳୀ ଓ ମୁସଲମାନଙ୍କ ମଧ୍ୟରେ ହୋଇଥିବା ଦଙ୍ଗା ସମୟରେ ସ୍ଥଗିତ ହୋଇଯାଇଥିବା "ସିଂହଳ ବୁଦ୍ଧୟା" ପୁନର୍ବାର ଆରମ୍ଭ କଲେ ।

୧୯୨୩ ମସିହାରେ ମେରି ଫୋଷ୍ଟରଙ୍କ ଦ୍ୱାରା ପ୍ରଦତ୍ତ ୫୦ ହଜାର ଆମେରିକାନ ଡଲାରରେ ଏକ ସ୍ଥାୟୀ ପାଣ୍ଠି ଗଠିତ ହେଲା ।

୧୯୨୫ରୁ ୧୯୨୭ ମଧ୍ୟରେ ଅନଗାରିକ ଧର୍ମପାଳ ଇଂଲଣ୍ଡ, ଆମେରିକା ଓ ଶ୍ରୀଲଙ୍କାକୁ ଅନେକ ଥର ଯାତ୍ରା କଲେ । ଏହି ସମୟରେ ଲଣ୍ଡନ ବୁଦ୍ଧିଷ୍ଟ ମିଶନ ସ୍ଥାପିତ କରାଗଲା । ୧୯୨୬ ଜୁଲାଇରେ ଲଣ୍ଡନ ବୁଦ୍ଧିଷ୍ଟ ମିଶନର ସ୍ଥାୟୀ କାର୍ଯ୍ୟାଳୟ ଫୋଷ୍ଟର ହାଉସ, ଲଣ୍ଡନରେ ସ୍ଥାପିତ କରାଗଲା । ଏହି ଫୋଷ୍ଟର ହାଉସକୁ କ୍ରୟ କରିବା ନିମନ୍ତେ 'ଏଚ. ଡନ କାରୋଲିସ'ଙ୍କ ବ୍ୟବସାୟୀ ପ୍ରତିଷ୍ଠାନ, ଅନଗାରିକ ବାପାଙ୍କର ଭୂସମ୍ପତ୍ତିର ଟ୍ରଷ୍ଟି ଓ ମିସେସ୍ ମେରି ଫୋଷ୍ଟର ଅର୍ଥ ଯୋଗାଇ ଦେଇଥିଲେ । ଯେଉଁ ଦସ୍ତାବିଜ ମିଳୁଅଛି, ସେଥିରୁ ଜଣାଯାଏ ୧୯୨୭ ମସିହାର ଶେଷ ଭାଗରେ ସେ ଲଣ୍ଡନ ଯାତ୍ରାକରି ରିଜେଣ୍ଟ ପାର୍କରେ ବିହାର ପାଇଁ ଜମି କିଣିବା ପାଇଁ ଯଥେଷ୍ଟ ଅର୍ଥ ସଂଗ୍ରହ କଲେ । ସେହିବର୍ଷ ଲଣ୍ଡନରେ ଏହି ମହାନ ଧର୍ମର ଦୀପଶିଖାକୁ ପ୍ରଜ୍ୱଳିତ କରି ରଖିବା ପାଇଁ ସେ ତିନିଜଣ ସିଂହଳୀ ବୌଦ୍ଧଭିକ୍ଷୁ ଭେନ ପରୱାହର ଭଜିରଗ୍ନନା (Ven. Parawahara Vajiragnana), ଭେନ ହେଗୋଡ଼ା ନନ୍ଦସରା (Ven. Hegoda Nandasara) ଏବଂ ଭେନ ଦେହିଗସ୍ପେ ପନ୍ନାସରା ଥେରୋ (Ven. Dehigaspe Pannasara Theros)ଙ୍କୁ ଲଣ୍ଡନ ପଠାଇଲେ ।

ଏହା ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀ ଦେବପ୍ରିୟ ୱଲିସିଂହେଙ୍କ ଆମନ୍ତ୍ରଣରେ ଜାତିର ପିତା ମହାତ୍ମା ଗାନ୍ଧି ୧୯୨୭ ମସିହାରେ କଲିକତାରେ ବୈଶାଖ ଉତ୍ସବ (ବୁଦ୍ଧ ଜୟନ୍ତୀ)ରେ ଯୋଗଦାନ କରିଥିଲେ ।

୧୯୨୭ ମସିହାର ଶେଷଭାଗରୁ ୧୯୩୧ ମସିହା ପର୍ଯ୍ୟନ୍ତ ପେଟରୋଗ ଓ ହୃଦରୋଗରେ ପୀଡ଼ିତ ହୋଇ ଅନଗାରିକ ଶଯ୍ୟାଶାୟୀ ହୋଇପଡ଼ିଲେ, ତଥାପି ସେ ମହାବୋଧି ସୋସାଇଟି ଓ ସାରନାଥର ଭବିଷ୍ୟତ ନିମନ୍ତେ ଯୋଜନାମାନ ପ୍ରସ୍ତୁତ କରୁଥିଲେ ।

୧୯୩୦ ମସିହା ଡିସେମ୍ବର ମାସ ୧୯ ତାରିଖରେ ହାୱାଇ ଦ୍ୱୀପର ମହିୟସୀ ମହିଳା ମିସେସ୍ ମେରି ଏଲିଜାବେଥ ଫୋଷ୍ଟର (Mrs Mary Elizabeth Foster)ଙ୍କ ଦେହାନ୍ତ ଅନଗାରିକ ଧର୍ମପାଳଙ୍କୁ ଗଭୀର ଆଘାତ ଦେଇଥିଲା । ସେ ତାଙ୍କର ପୋଷ୍ୟ ମାତା ଥିଲେ । ଅନଗାରିକ ଧର୍ମପାଳଙ୍କ ସମସ୍ତ ମହତ କାର୍ଯ୍ୟପାଇଁ ସେ ମୁକ୍ତହସ୍ତରେ ଅର୍ଥ ପ୍ରଦାନ କରୁଥିଲେ । ସେ ପ୍ରଥମ ବ୍ୟକ୍ତି ଯେ କି ମୂଳଗନ୍ଧାକୁଟି ବିହାର ଓ କଲିକତାରେ ଶ୍ରୀଧର୍ମରାଜିକା ବିହାର ପାଇଁ ଅର୍ଥ ପ୍ରଦାନ କରିଥିଲେ । ଯେତେବେଳେ ବୌଦ୍ଧଧର୍ମର ପୁନର୍ଜାଗରଣ ପାଇଁ ଅନଗାରିକ ଧର୍ମପାଳଙ୍କୁ ଅର୍ଥର ଆବଶ୍ୟକତା ପଡୁଥିଲା ଓ ସେ ବିବ୍ରତ ହୋଇପଡୁଥିଲେ, ସେତେବେଳେ ମିସେସ୍ ଫୋଷ୍ଟର ତାଙ୍କୁ ସାହସ ଓ ସମସ୍ତ ପ୍ରକାର ସାହାଯ୍ୟ ପ୍ରଦାନ କରୁଥିଲେ ।

ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ଅନଗାରିକ ଧର୍ମପାଳଙ୍କ ଲେଖା 'ମହାବୋଧି' ପତ୍ରିକାରେ ପ୍ରକାଶିତ ହୋଇଥିଲା । "ଭାରତରେ ବୌଦ୍ଧଧର୍ମର ପୁନର୍ଜାଗରଣ ପାଇଁ ଓ ଇଂଲଣ୍ଡରେ ଶାସନ ପ୍ରତିଷ୍ଠା ପାଇଁ ସୁଦୂର ହନୋଲୁଲୁରୁ ମିସେସ୍ ମେରି ଫୋଷ୍ଟର ସାହାଯ୍ୟ ପଠାଉଥିଲେ । ବୌଦ୍ଧ ଜଗତରେ ତାଙ୍କ ସ୍ଥାନ ପୂରଣ କଲାପରି ଦ୍ୱିତୀୟ ବ୍ୟକ୍ତି କେହି ନାହାନ୍ତି । ସମସ୍ତ ଧନୀ ବୌଦ୍ଧମାନଙ୍କର ମୃତ୍ୟୁ ଘଟିଛି । ବୌଦ୍ଧଭିକ୍ଷୁ ବିରଳ । ଭାରତ ପୁନରାୟ ପୀତବସ୍ତ୍ରଧାରୀ ତରୁଣ ବୌଦ୍ଧମାନଙ୍କୁ ଅହିଂସା, କରୁଣା, ମୈତ୍ରୀର ବାଣୀ ପ୍ରଚାର କରିବା ନିମନ୍ତେ ପ୍ରେରଣ କରିବ ।"

ରୋଗରୁ ସାମାନ୍ୟ ଆରୋଗ୍ୟ ଲାଭପରେ ଅନଗାରିକ ଧର୍ମପାଳ ୧୯୩୧ରେ ଭାରତକୁ ଆସି ମୂଳଗନ୍ଧାକୁଟି ବିହାରର ନିର୍ମାଣ କାର୍ଯ୍ୟ ଆମୂଳଚୂଳ ତତ୍ତ୍ୱାବଧାନ କରିଥିଲେ ।

ସେ ସମ୍ପୂର୍ଣ୍ଣ ସୁସ୍ଥ ରହୁ ନଥିବାରୁ ତାଙ୍କର ଶେଷ ଜୀବନ ସାରନାଥରେ ବିତାଇବା ନିମନ୍ତେ ନିଷ୍ପତ୍ତି ନେଲେ । ସେହି ଅନୁଯାୟୀ ସେ ତାଙ୍କର ରହିବା ନିମନ୍ତେ ସାଧାସିଧା ଭାବରେ ସମସ୍ତ ଆୟୋଜନ କଲେ । ସେ ରହୁଥିବା ଦୁଇଟି ପ୍ରକୋଷ୍ଠରେ ତାଙ୍କର ଶୋଇବା ପାଇଁ ଦୁଇଟି ଯଷ୍ଟି, ତାଳରେ ତିଆରି ଗୋଟିଏ ହୁଇଲ ଚେୟାର, ଗୋଟିଏ ଇଜି ଚେୟାର ଓ କିଛି ଦରକାରୀ ବାସନକୁସନ ଥିଲା ।

ଅନଗାରିକ ଧର୍ମପାଳଙ୍କର ଲେଖିବା ଓ ପଢ଼ିବାର ଅଭ୍ୟାସ ଥିଲା । ସେଥିପାଇଁ ତାଙ୍କର କଲିକତା ପରି ସାରନାଥରେ ମଧ୍ୟ ନିଜର ଗୋଟିଏ ପାଠାଗାର (ଲାଇବ୍ରେରୀ) ଥିଲା । ସାରନାଥ ପାଠାଗାରକୁ ସେ ମୂଳଗନ୍ଧାକୁଟି ପାଠାଗାର ନାମରେ ନାମିତ କରିଥିଲେ । ମନ୍ଦିରର ନିର୍ମାଣ କାର୍ଯ୍ୟ ତତ୍ତ୍ୱାବଧାନ କରିସାରିଲା ପରେ ପାଲି ଓ ଇଂରାଜୀ ଭାଷାରେ ଧର୍ମ ଉପରେ ଲିଖିତ ପୁସ୍ତକ ପଢ଼ିବା ତାଙ୍କର ଦୈନନ୍ଦିନ ଅଭ୍ୟାସ ଥିଲା ।

ସାରନାଥରେ ରହୁଥିବା ସମୟରେ ସେ ଦଶଜଣ ତରୁଣ ଶ୍ରବଣ (ସମାନେରା) ଭିକ୍ଷୁଙ୍କୁ ସ୍ୱତନ୍ତ୍ର ଧ୍ୟାନ ଦେଇ ତାଲିମ ପ୍ରଦାନ କରିଥିଲେ । ସେ ସେମାନଙ୍କୁ ସାରନାଥରୁ ତାଲିମ ସମାପ୍ତ ପରେ କାଣ୍ଡିର ଫୋଷ୍ଟର ସେମିନାରକୁ ରବୀନ୍ଦ୍ର ନାଥଙ୍କର ବନବିଦ୍ୟାଳୟ ଶାନ୍ତିନିକେତନକୁ ପଠାଇଥିଲେ ।

ସେହି ଦଶଜଣଙ୍କ ମଧ୍ୟରୁ ଚାରିଜଣ ସମାଜପାଇଁ ଅନେକ ଜନହିତକର କାର୍ଯ୍ୟ କରିଯାଇଛନ୍ତି । ସେମାନେ ହେଲେ ଭେନ୍ ଏମ୍. ସଙ୍ଘରଥନା ଥେରୋ (Ven. M. Sangharathana Thero), ଭେନ୍. ଏଚ. ଧମାନନ୍ଦ ଥେରୋ (Ven. H. Dhammananda Thero), ଭେନ୍. ୟୁ ଧମରଥନା ଥେରୋ (Ven. U.

Dhammarathana Thero) ଓ ଭେନ୍. ୱାଇ. ଧମାଲୋକ ଥେରୋ (Ven. Y. Dhamaloka Thero) । ଚିଟ୍ଟାଗଙ୍ଗରୁ ତିନିଜଣ ଶ୍ରବଣଙ୍କୁ ତାଲିମ ପାଇଁ ବଛାଯାଇଥିଲା । ସେମାନଙ୍କ ମଧ୍ୟରୁ ଧର୍ମଦୂତ ଭିକ୍ଷୁ ବା ଭେନ୍. ଏଲ୍. ଅରିୟାୱନ୍ସ ନାୟକେ ମହା ଥେରୋ (Ven. L. Ariyawansa Nayake Maha Thero) ନୂଆଦିଲ୍ଲୀ କେନ୍ଦ୍ରର ଭିକ୍ଷୁ ଦାୟିତ୍ୱରେ ଥିଲେ । ପରେ ମହାବୋଧି ସୋସାଇଟି, ଭାରତର ସଭାପତି ମଧ୍ୟ ହୋଇଥିଲେ ।

ପୃଥିବୀର ବୌଦ୍ଧଧର୍ମାବଲମ୍ବୀ ଦେଶମାନଙ୍କର ଛାତ୍ରମାନଙ୍କୁ ତାଲିମ ପ୍ରଦାନ ନିମନ୍ତେ ସେ ଗୋଟିଏ ଆନ୍ତର୍ଜାତିକ ବୌଦ୍ଧ ଇନଷ୍ଟିଚ୍ୟୁଟ ସ୍ଥାପନ କରିବାର ଯୋଜନା କରିଥିଲେ । ଏଥିରୁ ଏହା ସ୍ପଷ୍ଟ ପରିଲକ୍ଷିତ ହୁଏ ଯେ ଶାକ୍ୟମୁନି ବୁଦ୍ଧଙ୍କର ସେହି ମହାନ ଧର୍ମ ପ୍ରଚାର କରିବା ନିମନ୍ତେ ସେ କିପରି ଇଚ୍ଛୁକ ଥିଲେ । ମୂଳଗନ୍ଧାକୁଟି ବିହାରର ନିର୍ମାଣ କାର୍ଯ୍ୟ କିପରି ଶୀଘ୍ର ସମାପ୍ତ ହେବ, ଏଥିପାଇଁ ଅର୍ଥର ଅଭାବ ତାଙ୍କ ପାଇଁ ବଡ଼ ପ୍ରତିବନ୍ଧକ ହୋଇ ଦେଖାଦେଲା । ଯାହାହେଉ ଅପ୍ରତ୍ୟାଶିତ ଭାବରେ ବିଭିନ୍ନଆଡୁ ତାଙ୍କ ପାଖରେ ଅର୍ଥ ଆସି ପହଞ୍ଚିବାରେ ଲାଗିଲା ।

ଯେତେବେଳେ ମୂଳଗନ୍ଧାକୁଟି ବିହାର କାର୍ଯ୍ୟର ସମାପ୍ତି ହେବାକୁ ଯାଉଥିଲା, ଅନଗାରିକ ୧୯୩୧ ଜୁଲାଇ ତେର ତାରିଖରେ ମହାମାନ୍ୟ ବୋରୁଗମୁୱେ ରେୱାଥା ମହା ଥେରୋ (Ven'ble Boruggamuwe Rewatha Maha Thero)ଙ୍କଠାରୁ ପବ୍‌ବଜ୍ଜ (Pabbajja) ପ୍ରାପ୍ତ ହୋଇ ସିରି ଦେବମିତ୍ତ ଧମ୍ମପାଲ (Siri Devamitta Dhammapala) ଏହି ସନ୍ନ୍ୟାସୀ ନାମରେ ନାମିତ ହେଲେ । ବର୍ତ୍ତମାନ ତାଙ୍କର ଇଚ୍ଛା ଥିଲା, କଲିକତାରେ ସେ ଯେଉଁ ଶ୍ରୀଧର୍ମଜିକା ବିହାର ନିର୍ମାଣ କରିଛନ୍ତି ଓ ଯେଉଁଥିରେ ଶାକ୍ୟମୁନି ବୁଦ୍ଧଙ୍କ ପୁଣ୍ୟ ଦେହାବଶେଷ ପୀଠବସ୍ଥରେ ସଂସ୍ଥାପନ କରିଛନ୍ତି, ତାହା ପରିଦର୍ଶନ କରିବେ ଓ ତାଙ୍କର ପୁରାତନ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କୁ ଧର୍ମବାଣୀ ପ୍ରଚାର କରିବେ । ଅଗଷ୍ଟ ମାସରେ ସେ ସୁସ୍ଥ ଥିଲେ ଓ କଲିକତାରେ ତିନୋଟି ସାଧାରଣସଭାରେ ସେ ଭାଷଣ ଦେଇଥିଲେ ।

ଅନଗାରିକ ଧର୍ମପାଳ ଅଗଷ୍ଟ ମାସର ଶେଷ ସପ୍ତାହରେ ସାରନାଥ ଫେରି ଆସିଲେ ।

ତାଙ୍କର କଲିକତା ଗସ୍ତ ପୂର୍ବରୁ ସେ ବିହାରର ଉଦ୍‌ଘାଟନ ଉତ୍ସବ ନିମନ୍ତେ ସମସ୍ତ ପ୍ରସ୍ତୁତି କରିଥିଲେ ।

ନିର୍ଦ୍ଧାରିତ ଯୋଜନା ଅନୁଯାୟୀ, ୧୯୩୧ ନଭେମ୍ବର ୧୧ ତାରିଖରେ ମୂଳାଗନ୍ଧକୁଟ ବିହାର ଉଦ୍‌ଘାଟନ ଉତ୍ସବ ପାଳିତ ହୋଇଥିଲା ।

ଏହି ବିହାର ଆୟତନରେ ବିଶାଳକାୟ ଥିଲା । ଏହାର ଉଚ୍ଚତା ୨୦୦ ଫୁଟ ଥିଲା । ଏହି ବିହାର ପ୍ରାଚୀନ ବୌଦ୍ଧ ସ୍ଥାପତ୍ୟ ଶୈଳୀରେ ଭାରତୀୟ ଲାଲ ପଥରରେ ନିର୍ମିତ ହୋଇଥିଲା ।

ନଭେମ୍ବର ମାସ ୧୧ ତାରିଖ ଅପରାହ୍ନ ୨.୧୫ ମିନିଟରେ ମହାମାନ୍ୟ ଲର୍ଡ ୱିଲିଙ୍ଗଡନ୍ (Lord Willingdon)ଙ୍କ ପ୍ରତିନିଧି ଭାବରେ ପ୍ରତ୍ନତତ୍ତ୍ୱ ବିଭାଗର ମହାନିର୍ଦ୍ଦେଶକ ରାୟବାହାଦୁର ଦୟାରାମ ସାହ୍ନି ଶାକ୍ୟମୁନି ବୁଦ୍ଧଙ୍କର ପବିତ୍ର ଅସ୍ଥି ଅବଶେଷ ମହାବୋଧି ସୋସାଇଟିକୁ ପ୍ରଦାନ କରିଥିଲେ ।

ଏହି ବର୍ଣ୍ଣାଢ୍ୟ ଉତ୍ସବକୁ ବର୍ଣ୍ଣନାକରି ମହାବୋଧି ସୋସାଇଟିର ଶତବାର୍ଷିକୀ ଗ୍ରନ୍ଥରେ ଲିପିବଦ୍ଧ ହୋଇଛି ଯେ-"ଏହି ପବିତ୍ର ଦେହାବଶେଷକୁ ଗ୍ରହଣ କରିବା ପାଇଁ ଯିଏ ଖାଲିପାଦରେ ରହୁଥିଲେ ଓ ପରେ ଖାଲି ଦେହରେ ପୂର୍ବରୁ ଗ୍ରହଣ କରୁଥିଲେ, ସେହି ସାର ଆଶୁତୋଷ ମୁଖାର୍ଜୀ ଆଉ ଇହଧାମରେ ନଥିଲେ । ସେ ଇହଧାମରୁ ବିଦାୟ ଗ୍ରହଣ କରିଥିଲେ । ବଙ୍ଗଳାର ଅନ୍ୟତମ ସୁପୁତ୍ର ମହାବୋଧି ସୋସାଇଟି କଲିକତାର ସଭାପତି ମହାମାନ୍ୟ ନ୍ୟାୟମୂର୍ତ୍ତି ମନ୍ମଥନାଥ ମୁଖାର୍ଜୀ ଏହାକୁ ଏଥର ଗ୍ରହଣ କଲେ ।"

ନ୍ୟାୟମୂର୍ତ୍ତି ମୁଖାର୍ଜୀ ଏହି ଦେହାବଶେଷକୁ ଶ୍ରୀ ଦେବମିତ୍ର ଧର୍ମପାଳଙ୍କ ଭାଇ ମିଷ୍ଟର ରଜାହ ହେୱାୱିଥରନା (Mr Rajah Hewawitharana)ଙ୍କୁ ଅର୍ପଣ କଲେ । ଏହି ଉତ୍ସବ ଉପଲକ୍ଷେ ମହାମାନ୍ୟ ବନାରସର ମହାରାଜ ଗୋଟିଏ ହାତୀ ପଠାଇଥିଲେ । ମିଷ୍ଟର ରଜାହ ହେୱାୱିଥରନା ହାତୀ ପୃଷ୍ଠରେ ଏକ କ୍ୟାସକେଟରେ ଦେହାବଶେଷକୁ ରଖି ଗୋଟିଏ ଦୀର୍ଘ ଶୋଭାଯାତ୍ରାରେ ମୂଳଗନ୍ଧାକୁଟି ବିହାରକୁ ଯାତ୍ରା କଲେ ।

ଏହି ଉଦ୍‌ଘାଟନ ଉତ୍ସବରେ ଭାଗ ନେବାପାଇଁ ଶ୍ରୀ ଦେବପ୍ରିୟ ଭଲିସିଂହେ ଠିକ୍ ସମୟରେ ଲଣ୍ଡନରୁ ଫେରି ଆସିଥିଲେ । ମୂଳଗନ୍ଧାକୁଟି ବିହାରରେ ଏହି ଦେହାବଶେଷକୁ ସେ ଗ୍ରହଣ କରିଥିଲେ ।

ଶ୍ରୀ ଭଲିସିଂହେ ସେହି ପବିତ୍ର ଦେହାବଶେଷକୁ ସେଠାରେ ଉପସ୍ଥିତ ଥିବା ବର୍ତ୍ତମାନ ବଙ୍ଗଳାଦେଶ ଚିଟ୍ଟାଗଙ୍ଗର ବୟସ୍କ ବୌଦ୍ଧଭିକ୍ଷୁ ଅଗାସର ମହାସ୍ଥବିରଙ୍କୁ ଅର୍ପଣ କଲେ । ପେଟିକାରେ ଥିବା ଏହି ପବିତ୍ର ଦେହାବଶେଷ ଗୋଟିଏ ଭେଲଭେଟ କନାରେ ବୁଦ୍ଧମୂର୍ତ୍ତିର ପାଦତଳେ ସ୍ଥାପନ କରାଗଲା । ଏହି ବୁଦ୍ଧମୂର୍ତ୍ତିଟି ଧର୍ମପ୍ରଚାର ମୁଦ୍ରାରେ ଥିଲା ଓ ଏହା ସାରନାଥ ମୂର୍ତ୍ତିର ଅବିକଳ ପ୍ରତିମୂର୍ତ୍ତି ଥିଲା ।

ସବୁଠାରୁ ସ୍ମରଣୀୟ କଥା ହେଲା, ଶ୍ରୀ ଦେବମିତ୍ତ ଧର୍ମପାଳ, ଯିଏକି ଏହି ବିହାର ନିର୍ମାଣରେ ମୁଖ୍ୟ ପୁରୋଧା ଥିଲେ, ସେ ଗୋଟିଏ ହୁଇଲ ଚେୟାରରେ ବସି ଏହି ଉଦ୍‌ଘାଟନ ଉତ୍ସବକୁ ପର୍ଯ୍ୟବେକ୍ଷଣ କରୁଥିଲେ ।

ସଂଧ୍ୟାରେ ଗୋଟିଏ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ପ୍ରାୟ ଏକହଜାରରୁ ଅଧିକ ବ୍ୟକ୍ତି ଯୋଗଦାନ କରିଥିଲେ । ସେଥିମଧ୍ୟରୁ ପାଞ୍ଚଶହ ତିବ୍ବତ, ବର୍ମା (ମିଆଁମାର), ଶ୍ୟାମ (ଥାଇଲାଣ୍ଡ), ସିଲୋନ (ଶ୍ରୀଲଙ୍କା) ଓ ଅନ୍ୟାନ୍ୟ ଦେଶମାନଙ୍କରୁ ଆସି ଯୋଗଦାନ କରିଥିଲେ ।

ଏହି ସଭାରେ ଶ୍ରୀ ଦେବମିତ୍ତ ଧର୍ମପାଳ ଏକ ମର୍ମସ୍ପର୍ଶୀ ଭାଷଣ ପ୍ରଦାନ କରିଥିଲେ । ତା'ପରଦିନ ପୁରାତନ ଶ୍ରୀଲଙ୍କାର ରାଜଧାନୀ ଅନୁରାଧାପୁରରୁ ଅଣାଯାଇଥିବା ତିନୋଟି ବୋଧିଦ୍ରୁମର ଗୃରା ଏଠାରେ ଆଡ଼ମ୍ବରରେ ରୋପଣ କରାଗଲା । ଅନୁରାଧାପୁରର ଏହି ବୋଧିଦ୍ରୁମ ପୃଥିବୀର ସର୍ବପୁରାତନ ବୋଧିଦ୍ରୁମ ଅଟେ । ଏହା ବୁଦ୍ଧଗୟାରେ ଥିବା ବୋଧିଦ୍ରୁମର ଗୃରା ଅଟେ, ଯେଉଁଠାରେ କି ଶାକ୍ୟମୁନି ବୁଦ୍ଧଦେବ ଜ୍ଞାନପ୍ରାପ୍ତ ହୋଇଥିଲେ । ଅଶୋକଙ୍କ କନ୍ୟା ସଂଘମିତ୍ରା ଏହି ଗୃରାକୁ ଶ୍ରୀଲଙ୍କାକୁ ନେଇଥିଲେ ।

ଏହି ମୂଳଗନ୍ଧାକୁଟି ବିହାରର ନିର୍ମାଣ ଓ ଉଦ୍‌ଘାଟନ ଅନଗାରିକ ଧର୍ମପାଳଙ୍କର ଜୀବନ ବ୍ୟାପୀ ସଂଗ୍ରାମ ଓ ତ୍ୟାଗର ସର୍ବଶ୍ରେଷ୍ଠ ଗୌରବ ଓ ସଫଳତା ଅଟେ ।

ଏହି ବିହାର ନିର୍ମାଣ ପାଇଁ ଅନଗାରିକଙ୍କୁ ବହୁତ ବାଧାବିଘ୍ନ ଦେଇ ଗତି କରିବାକୁ ପଡ଼ିଥିଲା । ଏଥିପାଇଁ ଇଂରାଜୀ ପ୍ରଶାସକମାନଙ୍କ ମଧ୍ୟରେ ମହାମାନ୍ୟ ସାର ହାରକୋର୍ଟ ବଟଲର (Sir Harcourt Butler) ଏବଂ ଭାରତକୁ ଆନ୍ତରିକତାର ସହ ଭଲ ପାଉଥିବା ଓ ଭାରତର ଉନ୍ନତି ଗୃହୁଁଥିବା ସାର ଜନ୍ ମାର୍ଶାଲ (Sir John Marshall) ସହଯୋଗ କରିଥିଲେ । ଏମାନଙ୍କ ବ୍ୟତୀତ ଶ୍ରୀ ଦେବପ୍ରିୟ ଭଲିସିଂହେ (Sri Devapriya Valisinghe), ମିଷ୍ଟର ପି. ପି. ସିରିୱର୍ଦନେ (Mr. P. P. Siriwardene), ଡକ୍ଟର ସି. ଏ. ହେୱାୱିଥରନା (Dr. C. A. Hewawitharana), ରାଜା ହେୱାୱିଥରନା (Rajah Hewawitharana), ରାୟ ବାହାଦୁର ଜି. ଏନ୍. ଚକ୍ରବର୍ତ୍ତୀ (Rai Bahadur G. N. Chakravarti), ମିଷ୍ଟର ଏମ. ଏମ. ଗାଙ୍ଗୁଲି (Mr. M. M. Ganguly), ଅନାଗରିକଙ୍କ ପରିବାରର ସଦସ୍ୟ ଓ ତାଙ୍କର ଶୁଭେଚ୍ଛୁବର୍ଗ ମିସେସ୍ ମେରି ଫୋଷ୍ଟର (Mrs Mary Foster), କୁମ୍ବଲୱେଲେ ଶ୍ରିନିୱାସ ମହା ଥେରୋ (Kumbalwelle Sri Niwasa Maha Thero) ଏହି ମନ୍ଦିର ନିର୍ମାଣରେ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ ପ୍ରଦାନ କରିଥିଲେ । ଏଥିପାଇଁ ଆଜି ମଧ୍ୟ ସେମାନଙ୍କୁ ସମ୍ମାନର ସହ ସ୍ମରଣ କରାଯାଉଛି ।

ଶ୍ରୀ ଉଲିସିଂହେଙ୍କ ଅନୁରୋଧରେ ବ୍ରିଟିଶ ମହାବୋଧି ସୋସାଇଟିର ସଭାପତି ମିଷ୍ଟର ବି. ଏଲ୍. ବ୍ରଟନ (Mr. B. L. Broughton) ଏହି ଉତ୍ସବରେ ଯୋଗଦାନ କରିବା ନିମନ୍ତେ ସ୍ୱତନ୍ତ୍ର ଭାବରେ ଆସିଥିଲେ ଓ ମନ୍ଦିର ପାଇଁ ଟ୧୦,୦୦୦ଙ୍କା ବ୍ୟକ୍ତିଗତ ଭାବରେ ଦାନ କରିଥିଲେ । ଏହି ଅର୍ଥରେ ଜାପାନର ଶିଳ୍ପୀ ମିଷ୍ଟର କୋଷେଷ୍ଟୁ ନୋସୁ (Mr. Kosetsu Nosu) ଓ ତାଙ୍କର ସହକାରୀ ମିଷ୍ଟର କୱଲ (Mr. Kawal) ବିହାରର ପାଚେରୀକୁ ଚିତ୍ରଣ କରିବାର ଦାୟିତ୍ୱ ନେଇଥିଲେ ଓ ଏଥିପାଇଁ ସେମାନେ ସାଢ଼େ ତିନିବର୍ଷ କଠିନ ପରିଶ୍ରମ କରି ଏହି କାର୍ଯ୍ୟ ସମାପ୍ତ କରିଥିଲେ ।

୧୯୩୨ ଶେଷ ସୁଦ୍ଧା ଶ୍ରୀ ଦେବମିତ୍ର ଧର୍ମପାଳ ମନ୍ଦିରର ଭିତର ପାଖ କାର୍ଯ୍ୟ ତତ୍ତ୍ୱାବଧାନ କରିଥିଲେ ।

ଏହି ମନ୍ଦିର ଉଦ୍‌ଘାଟନର ପ୍ରଥମ ବାର୍ଷିକୀ ପାଳନ ପାଇଁ କୌଣସି ସ୍ୱତନ୍ତ୍ର ଉତ୍ସବ ହୋଇନଥିଲା । ମାତ୍ର ୧୧ ନଭେମ୍ବର ୧୯୩୩ରେ ଏକ ଉତ୍ସବରେ ଏହାର ଦ୍ୱିତୀୟ ବାର୍ଷିକୀ ପାଳନ କରାଯାଇଥିଲା । ଏଥିରେ ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କର ପତ୍ନୀ କମଳା ନେହେରୁ, ଭଉଣୀ ବିଜୟଲକ୍ଷ୍ମୀ ପଣ୍ଡିତ ଓ କନ୍ୟା ଇନ୍ଦିରାଙ୍କ ସହ ଯୋଗଦାନ କରିଥିଲେ । ୧୯୩୩ ମସିହା ଜାନୁୟାରୀ ୧୬ ତାରିଖରେ ଆଠଟି ପଥର ଚିହ୍ନିତ ୫୫ ଫୁଟ x ୫୫ ଫୁଟରେ ଗୋଟିଏ ଜମିକୁ ଦୀକ୍ଷା ପ୍ରଦାନ ନିମନ୍ତେ ଦେବମିତ୍ର ଧର୍ମପାଳ ସୋସାଇଟିକୁ ପ୍ରଦାନ କଲେ ।

ମାଲୱାଟା ଚ୍ୟାପ୍‌ଟରର ସମ୍ମାନନୀୟ ଭେନ୍. ଏମ୍. ସିଦ୍ଧାର୍ଥ ଅନୁନାୟକେ ମହା ଥେରୋ (Ven. M. Siddharta Anunayake Maha Thero)ଙ୍କ ନେତୃତ୍ୱରେ ଦଶଜଣ ବରିଷ୍ଠ ଭିକ୍ଷୁ, ବିଦ୍ୟୋଦୟ ଓ ବିଦ୍ୟାଳଙ୍କାର ପିରିଭିନସର ଦୁଇଜଣ ଅଧ୍ୟକ୍ଷ ସିଲୋନ (ଶ୍ରୀଲଙ୍କା)ରୁ ସାରନାଥ ଆସି ସଙ୍ଘର ବିନୟ ନିୟମାନୁଯାୟୀ ସେହି ସ୍ଥାନକୁ ଶୁଦ୍ଧପୂତ କଲେ । ଏହାର ସୀମା ଅଭିମନ୍ତ୍ରିତ ହୋଇସାରିଲା ପରେ ଶ୍ରୀ ଦେବମିତ୍ର ଧର୍ମପାଳ ଯିଏ ପ୍ରଥମ ଦୀକ୍ଷା (ପବ୍‌ବଜ୍ଜ) ଗ୍ରହଣ କରିଥିଲେ ସେ ଉଚ୍ଚତମ ଦୀକ୍ଷା (ଉପସମ୍ପଦ) ଗ୍ରହଣ କଲେ ଓ ସମ୍ପୂର୍ଣ୍ଣ ଭାବରେ ଭିକ୍ଷୁରେ ପରିଣତ ହେଲେ ।

ଉଚ୍ଚତର ଦୀକ୍ଷା ଗ୍ରହଣ ପରେ ସେ ପୁନରାୟ ଅସୁସ୍ଥ ହୋଇପଡ଼ିଲେ । ତାଙ୍କର ସେହି ରୋଗାବସ୍ଥାରେ ସମ୍ମାନନୀୟ ଧର୍ମପାଳ ବୁଦ୍ଧଗୟା ବିଷୟରେ ବାରମ୍ବାର ଆଲୋଚନା କରିବାରେ ଲାଗିଲେ । ଏ ବିଷୟରେ ଆଲୋଚନା ନକରି ତାଙ୍କର ଗୋଟିଏ ଦିନ ଅତିବାହିତ ହେଲା ନାହିଁ । ପୃଥିବୀର ବୌଦ୍ଧମାନଙ୍କ ପାଇଁ ଏହି ପବିତ୍ର ସ୍ଥାନକୁ ପୁନରୁଦ୍ଧାର କରିବା ତାଙ୍କର ସର୍ବଶ୍ରେଷ୍ଠ ଇଚ୍ଛା ଥିଲା ।

"ଯଦି ମୁଁ ଦୁଇବର୍ଷ ବଞ୍ଚିରହେ, ତା'ହେଲେ ମୁଁ ଦେଖିବି ଏହି ପବିତ୍ର ସ୍ଥାନ ପୁନରୁଦ୍ଧାର ହୋଇପାରିଛି" ସେ ଏହିକଥା ଭଲିସିଂହେଙ୍କୁ କହିଥିଲେ ।

ସମ୍ମାନନୀୟ ଧର୍ମପାଳ ପୀଡ଼ିତ ହୋଇ କେତେମାସ ପାଇଁ ଶଯ୍ୟାଶାୟୀ ହୋଇପଡ଼ିଲେ । ୧୯୩୩ ମସିହା ଏପ୍ରିଲ ୨୦ ତାରିଖରେ ତାଙ୍କ ଦେହ ସାଙ୍ଘାତିକ ଅସୁସ୍ଥ ହୋଇପଡ଼ିଲା ଓ ତାଙ୍କର ସମ୍ପର୍କୀୟମାନଙ୍କୁ ତାହା ଜଣାଇ ଦିଆଗଲା ।

ଶ୍ରୀ ଦେବପ୍ରିୟ ଭଲିସିଂହେ, ଯିଏ ସେତେବେଳେ ବ୍ରହ୍ମଚାରୀ ଦେବପ୍ରିୟ ଭଲିସିଂହେ ନାମରେ ପରିଚିତ ଥିଲେ, ସେ କଲିକତାରୁ ସାରନାଥ ତୁରନ୍ତ ଯାତ୍ରା କଲେ । ସେ ତାଙ୍କ ପ୍ରଭୁଙ୍କ ଚିକିତ୍ସା ପାଇଁ ଡାକ୍ତର ଡକେଇ ପଠେଇଲେ । ଡକ୍ଟର ପି. ନନ୍ଦୀ କଲିକତାର ଜଣେ ପ୍ରଖ୍ୟାତ ଡାକ୍ତର ଥିଲେ । ତାଙ୍କୁ ଅନଗାରିକଙ୍କ ଚିକିତ୍ସା ପାଇଁ ସ୍ୱତନ୍ତ୍ର ଭାବେ ସାରନାଥକୁ ନିଆଗଲା ।

ଏହି ମହାନ ବ୍ୟକ୍ତି ତାଙ୍କ ଜୀବନର ଶେଷ କେତୋଟି ଦିବସ ପୂର୍ବରୁ ଓ ତିରୋଧାନର ଅବ୍ୟବହିତ ପୂର୍ବରୁ ଅସହ୍ୟ ଯନ୍ତ୍ରଣା ଭୋଗୁଥିଲେ ମଧ୍ୟ ବିଚ଼ଳିତ ହେଉନଥିଲେ ।

ବ୍ରହ୍ମଚାରୀ ଦେବପ୍ରିୟ ଭଲିସିଂହେ ସମ୍ମାନନୀୟ ଦେବମିତ୍ର ଧର୍ମପାଳଙ୍କ ଜୀବନର ଅନ୍ତିମ ସମୟରେ ତାଙ୍କ ଶଯ୍ୟା ନିକଟରେ ଉପସ୍ଥିତ ଥିଲେ । ସେ ମହାବୋଧି ପତ୍ରିକାରେ ଏ ସମ୍ପର୍କରେ ଯାହା ଲିପିବଦ୍ଧ କରିଥିଲେ, ତାହା ନିମ୍ନରେ ଦିଆଯାଇଛି ।

"ଆମେ ଯେଉଁଦିନ ଆଶା କରୁଥିଲୁ, ସମ୍ମାନନୀୟ ଧର୍ମପାଳଙ୍କ ପୁତୁରା ମିଷ୍ଟର ରାଜା ହେୱାୱିତର୍ନେ (Mr. Rajah Hewavitarne) ତାହାର ଗୋଟିଏ ଦିନ ପୂର୍ବରୁ ୨୬ ତାରିଖ ଦିନ କଲମ୍ବୋରୁ ଆସି ପହଞ୍ଚିଲେ । ମୁଁ ସବୁବେଳେ ଆଶା କରୁଥିଲି, ରୋଗୀର କୌଣସି ଅତ୍ୟନ୍ତ ସାଙ୍ଘାତିକ ଅବସ୍ଥା ଘଟିବା ପୂର୍ବରୁ ସେ ଯେମିତି ପହଞ୍ଚିଯିବେ । ସେ ପହଞ୍ଚିବାରୁ ମୋ ମୁଣ୍ଡରୁ ଯେମିତି ଗୋଟାଏ ବଡ଼ ବୋଝ ଓହ୍ଲାଇଗଲା । ମୁଁ ଟିକେ ଶାନ୍ତିଲାଭ କଲି । ସମ୍ମାନନୀୟ ଧର୍ମପାଳ ତାଙ୍କୁ ସାଙ୍ଗେ ସାଙ୍ଗେ ଚିହ୍ନିପାରିଲେ, ସ୍ନେହରେ ତାଙ୍କ ମୁହଁକୁ ଆଉଁସି ଦେଲେ । ତାଙ୍କ ଭାଇ ନେଲ (Neil)ଙ୍କ ବିଷୟରେ ପଚାରିଲେ । ବୁଦ୍ଧିଷ୍ଟ କଂଗ୍ରେସ ଯେଉଁ ସ୍ମାରକପତ୍ର ପ୍ରଦାନ କରିଥିଲା, ସେ ସମ୍ପର୍କରେ କ'ଣ ପଦକ୍ଷେପ ନିଆଯାଇଛି ଜାଣିବାକୁ ଚାହିଁଲେ । କିଛି ଘଣ୍ଟା ବିତିଗଲା ପରେ ତାଙ୍କଠାରେ ଆରୋଗ୍ୟ ହେବାର ସୂଚନା ମିଳିଲା । ମାତ୍ର ତାଙ୍କ ଦେହ ପୁନରାୟ ସାଙ୍ଘାତିକ ହୋଇଗଲା । ଅନ୍ତିମ ସମୟ ଖୁବ୍ ଶୀଘ୍ର ପହଞ୍ଚିବ, ସମସ୍ତ ବୌଦ୍ଧମାନେ ଅଶ୍ରୁପାତ କରିବେ, ଯେହେତୁ ରୋଗୀ ଯଥେଷ୍ଟ ପୁଷ୍ଟିକର ଖାଦ୍ୟ ଖାଉନଥିଲେ । ତାଙ୍କ ଇଚ୍ଛାବିରୁଦ୍ଧରେ ତାଙ୍କୁ ଇଞ୍ଜେକସନ୍ ଦେବାକୁ ପଡୁଥିଲା ।

୨୭ ତାରିଖ ଦିନ ସେ ହଠାତ୍ ଡାକି କଲମ ଓ କାଳି ଆଣି କ'ଣ ଅତି ଜରୁରୀକଥା ଲେଖିବାକୁ ଗ୍ହିଁଲେ । ସେ ଅର୍ଦ୍ଧଚୈତନ୍ୟ ଅବସ୍ଥାରେ ଥିଲେ । ବହୁତ କଷ୍ଟରେ କିଛି ଲେଖି ସେ ସବୁଦିନପାଇଁ ଚକ୍ଷୁ ମୁଦ୍ରିତ କରିଦେଲେ । ସେ ତିନୋଟି ଧାଡ଼ି ଲେଖିଥିଲେ, ପ୍ରଥମ ଧାଡ଼ି ପଢ଼ି ହେଉନଥିଲା । ଶେଷ ଦୁଇଧାଡ଼ି ଏହିପରି ଲେଖା ହୋଇଥିଲା : "ଡାକ୍ତର ନନ୍ଦୀ, ମୁଁ ଇଞ୍ଜେକସନ ନେଇ କ୍ଳାନ୍ତ ହୋଇପଡ଼ିଛି । ମୁଁ ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରେ ।"

**ଶେଷ ସମୟ ଉପନୀତ :**

୨୮ ତାରିଖରେ ତାଙ୍କର ଅବସ୍ଥାରେ କିଛି ଉନ୍ନତି ହେଲାନାହିଁ, ଯଦିଓ ଡଃ ନନ୍ଦୀ ଆଶାବାଦୀ ଥିଲେ ଓ ଆମମାନଙ୍କୁ ବିବ୍ରତ ନ ହେବାକୁ ପରାମର୍ଶ ଦେଲେ । ସାରନାଥରେ ଡଃ ନନ୍ଦୀ ପାଞ୍ଚଦିନ ରହି ତାଙ୍କର ସହକାରୀଙ୍କୁ ଚିକିତ୍ସା ଗ୍ଲୁ ରଖିବାକୁ ପରାମର୍ଶ ଦେଇ କଲିକତା ଯାତ୍ରା କଲେ ।

ରୋଗୀ ଅତ୍ୟନ୍ତ ବ୍ୟସ୍ତ ଓ ବିଚଳିତ ହୋଇ ରାତି ବିତେଇଲେ । ଆସନ୍ତାକାଲି ପାଇଁ କ'ଣ ଘଟିବାକୁ ଯାଉଛି, ସେ କଥା ଆମେ ଜାଣିପାରୁ ନଥିଲୁ । ୨୯ ତାରିଖ ସକାଳେ ସେ ପ୍ରାୟ ଚେତାଶୂନ୍ୟ ହୋଇପଡ଼ିଲେ । ମାତ୍ର ଥରେ ମୋ ନାମ ଉଚ୍ଚାରଣ କରିବା ବ୍ୟତୀତ ସେ ଆଉ କିଛି କହିନଥିଲେ । ତାଙ୍କୁ ସବୁଦିନ ପରି ସହକାରୀ ଡାକ୍ତର ପୋଛାପୋଛି କରି ସ୍ନାନ କରାଇଦେଲେ । ମାତ୍ର ସବୁଦିନ ପରି ସେ କଡ଼ ଲେଉଟାଇଲେ ନାହିଁ । ସେ ଖାଇବା ପାଇଁ କିଛି ଆଗ୍ରହ ପ୍ରକାଶ କଲେ ନାହିଁ ଓ ତାଙ୍କର ଆଖି ଦୁଇଟି ଅର୍ଦ୍ଧ ମୁଦ୍ରିତ ଥିଲା ।

ମିଷ୍ଟର ରାଜା ହେୱାୱିତର୍ନେ ଓ ଅନ୍ୟାନ୍ୟ ଅନ୍ତେବାସୀମାନେ ଏକଲୟରେ ତାଙ୍କ ଶଯ୍ୟା ପାଖରେ ବସି ଗ୍ହିଁ ରହିଥାନ୍ତି । ହଠାତ୍ ରାତି ବାରଟା ବେଳେ ତାଙ୍କର ଦେହର ଉତ୍ତାପ ବୃଦ୍ଧି ପାଇଲା । ଡାକ୍ତରଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ରାତି ଦୁଇଟା ସୁଦ୍ଧା ଏହା ୧୦୪.୬°ଫା.କୁ ବୃଦ୍ଧି ପାଇଲା । ଆମେ ସମସ୍ତେ ଅନୁଭବ କଲୁ ଯେ ତାଙ୍କର ଅନ୍ତିମ ମୁହୂର୍ତ୍ତ ଉପଗତ ହେଲା । ମିଷ୍ଟର ହେୱାୱିତର୍ନେ ସମସ୍ତ ଭିକ୍ଷୁ ଓ ଶ୍ରବଣମାନଙ୍କୁ ଡକାଇ ପିରିଥ ପାଠ କରିବାକୁ ଅନୁରୋଧ କଲେ । ଯେତେବେଳେ ଭିକ୍ଷୁ ଓ ଶ୍ରବଣମାନେ ମନ୍ତ୍ର ପାଠ କରୁଥିଲେ, ସେତେବେଳେ ସେହି ମହାନ ବ୍ୟକ୍ତି ରାତି ତିନିଟାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

**ପ୍ରଶାନ୍ତ (ଅବିଚଳିତ) ସ୍ମିତହାସ୍ୟ :**

ତାଙ୍କ ମୁହଁରେ ଶାନ୍ତି ଓ ସନ୍ତୋଷର ସ୍ମିତହାସ୍ୟ ଝଲସୁଥିଲା । ଏହିପରି ଆଧୁନିକ ସମୟର ମହାନ ସିଂହଳୀଙ୍କର ଘଟଣାବହୁଳ ଜୀବନର ପରିସମାପ୍ତି

ଘଟିଲା । ସେ ଥିଲେ ଆଧୁନିକ ସମୟର ଅନ୍ୟତମ ପ୍ରଖ୍ୟାତ ସ୍ନେହାସ୍ପଦ ବ୍ୟକ୍ତି । ସିଂହଳୀମାନଙ୍କର ଯେଉଁ ଜାତୀୟ ଅଧଃପତନ ଦେଖାଦେଇଥିଲା, ସେଥିରୁ ସେମାନଙ୍କୁ ସେ କେବଳ ଉଦ୍ଧାର କରିଥିଲେ ତାହା ନୁହେଁ, ସେ ତାଙ୍କର ମାନବଜାତିର ସେବାଦ୍ୱାରା ସିଂହଳୀମାନଙ୍କୁ ଅନ୍ୟଦେଶର ଲୋକମାନଙ୍କ ଆଗରେ ସମ୍ମାନସ୍ପଦ ପଦରେ ଅଭିଷିକ୍ତ କରିଦେଇଗଲେ । ମାନବଜାତିର ସେବାପାଇଁ ସେ କ'ଣ କାର୍ଯ୍ୟସବୁ କରିଛନ୍ତି, ଏହା ତାହାର ପ୍ରଦର୍ଶନୀୟ କ୍ଷେତ୍ର ନୁହେଁ । ମାତ୍ର ଏକଥା ନିର୍ଭୟରେ ଓ ବିନା ଦ୍ୱିଧାରେ କୁହାଯାଇପାରେ, ତାଙ୍କ ଦେଶର ମଙ୍ଗଳ ପାଇଁ ଓ ପୃଥିବୀରେ ବୌଦ୍ଧଧର୍ମର ପ୍ରସାର ପାଇଁ ସେ ଯାହା କରିଯାଇଛନ୍ତି, ଗତ ସାତଶହ ବର୍ଷ ମଧ୍ୟରେ କେହି ତାଙ୍କୁ ଏଥିରେ ଅତିକ୍ରମ କରିପାରିବେ ନାହିଁ । ଏହା ନିଃସନ୍ଦେହ, ଏହି ଜାତି କୃତଜ୍ଞତାର ସହ ତାଙ୍କ ସ୍ମୃତିକୁ ଚିରଦିନ ସାଇତି ରଖିବ ଓ ବୌଦ୍ଧଧର୍ମର ଇତିହାସରେ ଅଶୋକ, ମହେନ୍ଦ୍ର ଏବଂ ଅନ୍ୟାନ୍ୟ ମହାନ ବ୍ୟକ୍ତିଙ୍କ ସହ ସେ ପରିଗଣିତ ହେବେ ।

*(ମହାବୋଧି ପତ୍ରିକା, ଜୁନ ୧୯୩୩)*

ସମ୍ମାନନୀୟ ଶ୍ରୀ ଦେବମିତ୍ର ଧର୍ମପାଳଙ୍କ ତିରୋଧାନ ପରେ ସାଙ୍ଗେ ସାଙ୍ଗେ ଅନ୍ତେଷ୍ଟିକ୍ରିୟା ନିମନ୍ତେ ଏକ କମିଟି ଗଠନ କରାଗଲା ଓ ବ୍ରହ୍ମଚର୍ଯ୍ୟ ଦେବପ୍ରିୟ ଭଲିସିଂହେ ଏହାର ସଂପାଦକ ରହିଲେ ।

ଆମେରିକା, ଇଂଲଣ୍ଡ, ଜାପାନ, ସିଲୋନ (ଶ୍ରୀଲଙ୍କା), ବର୍ମା (ମିଆଁମାର), ଶ୍ୟାମ (ଥାଇଲାଣ୍ଡ) ଓ ଭାରତର ପ୍ରଖ୍ୟାତ ସଂସ୍ଥା ଓ ଜାତୀୟ ନେତାମାନଙ୍କ ପାଖକୁ ଟେଲିଗ୍ରାମମାନ ପଠାଗଲା ।

କଲିକତା, ବୁଦ୍ଧଗୟା ଓ ଅନ୍ୟକେତେକ ସ୍ଥାନମାନଙ୍କରୁ ସ୍ୱତନ୍ତ୍ର ପ୍ରତିନିଧିମାନେ ସାରନାଥରେ ପହଞ୍ଚିଲେ ।

ମହାବୋଧି ସୋସାଇଟି ଦ୍ୱାରା ନିମ୍ନଲିଖିତ ମତେ ତାଙ୍କର ମୃତ୍ୟୁ ସମ୍ପର୍କରେ ଘୋଷଣା କରାଗଲା ଏବଂ ତାହା ଭାରତ ଓ ଭାରତ ବାହାରର ସମ୍ବାଦପତ୍ରମାନଙ୍କୁ ପ୍ରେରଣ କରାଯାଇଥିଲା ।

**ମୃତ୍ୟୁ ଘୋଷଣା :**

ଆମେ ଦୁଃଖର ସହିତ ଜଣାଉଅଛୁ କି ଆମର ପ୍ରିୟ ମାର୍ଗଦର୍ଶକ ଓ ନେତା ଶ୍ରୀ ଦେବମିତ୍ରଙ୍କ ମହାପ୍ରୟାଣରେ ପୃଥିବୀର ବୌଦ୍ଧସମାଜର ଅପୂରଣୀୟ କ୍ଷତି ହେଲା । ସାରନାଥରେ ଏପ୍ରିଲ ୨୯ ତାରିଖରେ ତାଙ୍କର ଦେହାନ୍ତ ହୋଇଯାଇଛି । ତାଙ୍କ ମୃତ୍ୟୁରେ ଖାଲି ପୃଥିବୀର ବୌଦ୍ଧଧର୍ମର କ୍ଷତି ହେଲା ତାହା ନୁହେଁ, ପୃଥିବୀର ସମସ୍ତ ନର, ନାରୀ ଯେଉଁମାନେ ଧର୍ମରେ ବିଶ୍ୱାସ କରନ୍ତି, ସେମାନେ ତାଙ୍କ ମୃତ୍ୟୁରେ

ଗଭୀର ଶୋକ କରିବେ । ଶ୍ରୀ ଦେବମିତ୍ର ଧର୍ମପାଳ ଆମ ସମୟର କେବଳ ବୌଦ୍ଧଧର୍ମର ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱ ନଥିଲେ, ସେ ଜଣେ ମହାପୁରୁଷ ଥିଲେ, ଯାହାଙ୍କର ଜୀବନଦର୍ଶନ ଓ କର୍ମପ୍ରଣାଳୀ ପୃଥିବୀର ଲକ୍ଷ ଲକ୍ଷ ଜନସାଧାରଣ ସେମାନେ ବୌଦ୍ଧ ନ ହୋଇଥିଲେ ମଧ୍ୟ ସେମାନଙ୍କୁ ଅନୁପ୍ରାଣିତ କରିବ, କାରଣ ମାନବଜାତିର ସେବା ଓ ଉନ୍ନତି ପାଇଁ ସେ ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲେ, ତା'ର ପଟାନ୍ତର ନାହିଁ ।

ଶ୍ରୀ ଦେବମିତ୍ର ଧର୍ମପାଳ ସିଲୋନରେ ୧୮୬୪ ମସିହା ସେପ୍‌ଟେମ୍ବର ୧୭ରେ ଜନ୍ମଗ୍ରହଣ କରିଥିଲେ । ସେ ସେଣ୍ଟ ଥମାସ୍ କଲେଜ, କଲମ୍ବୋରେ ଶିକ୍ଷାଲାଭ କରିଥିଲେ । ପାଠ ପଢ଼ିଲାବେଳେ ବାଇବେଲ ପଢ଼ିବା ପାଇଁ ସେ ଅତ୍ୟନ୍ତ ଆଗ୍ରହୀ ଥିଲେ । ତାଙ୍କର ଗୋଟିଏ ସମୃଦ୍ଧ ବୌଦ୍ଧ ପରିବାର ଥିଲା । ତାଙ୍କର ପରିବାର ପାରମ୍ପରିକ ନେତୃତ୍ୱ ଓ ମାନବସେବା ପାଇଁ ସୁଖ୍ୟାତି ଅର୍ଜନ କରିଥିଲା । ସେ ସରକାରୀ କାର୍ଯ୍ୟରେ ଯୋଗଦାନ କରି ୧୮୮୬ରେ ତାହା ପରିତ୍ୟାଗ କରିଥିଲେ । ସେ କଲୋନେଲ ଓଲକଟ୍ (Colonel Olcott) ଓ ମାଡାମ ବ୍ଲାଭସ୍କି (Madam Blavatsky)ଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ । ତାଙ୍କର ତରୁଣ ମନ ସେମାନଙ୍କ ଦ୍ୱାରା ବହୁଭାବରେ ପ୍ରଭାବିତ ଓ ଅନୁପ୍ରାଣିତ ହୋଇଥିଲା, ଯାହାଦ୍ୱାରା ତାଙ୍କ ମନର ଅଶାନ୍ତି ଦୂର ହୋଇଯାଇଥିଲା । ସେ ଜନହିତକର ଓ ଗଠନମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରିଥିଲେ । ସରକାରୀ ଚାକିରୀର ଏହି ଆକର୍ଷଣୀୟ ପଦବୀରୁ ଇସ୍ତଫା ତାଙ୍କ ଜୀବନର ଗତିପଥ ବଦଳାଇ ଦେଇଥିଲା ଏବଂ ସେ ତ୍ୟାଗ ଓ ସେବା ମାର୍ଗକୁ ବାଛି ନେଇଥିଲେ । ଆଜି ଯେତେବେଳେ ମଣିଷ ଅର୍ଥ ଓ ପଦବୀ ପାଇଁ ପାଗଳ, ତାଙ୍କର ଏହି ଦୃଷ୍ଟାନ୍ତ ଆଜିଯୁଗରେ ବିରଳ ଅଟେ ।

*(ମହାବୋଧି ପତ୍ରିକା, ମେ-୧୯୩୩)*

ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଦେଖିବା ପାଇଁ ଶହ ଶହ ଲୋକ ସାରନାଥରେ ଏକତ୍ରିତ ହୋଇଥିଲେ । ମାତ୍ର ସ୍ୱର୍ଗତ ଶ୍ରୀ ଦେବମିତ୍ର ଧର୍ମପାଳ ପୂର୍ବରୁ ଯେଉଁ ଇଚ୍ଛା ପ୍ରକାଶ କରିଥିଲେ, ତଦନୁଯାୟୀ ପାରମ୍ପରିକ ବୌଦ୍ଧଧର୍ମାନୁଯାୟୀ ଅତ୍ୟନ୍ତ ସରଳ ଭାବରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ ହୋଇଥିଲା ।

ମୂଳାଗନ୍ଧାକୁଟି ବିହାରର ପଛପାଖରେ ତାଙ୍କ ଜଡ଼ ଶରୀରରେ ଶ୍ୱେତବସ୍ତ୍ର ଆଚ୍ଛାଦନ କରି ଅଗ୍ନି ସଂଯୋଗ ପାଇଁ ଏକ ସ୍ଥାନ ବଛାଗଲା ।

ଶେଷରେ ତାଙ୍କର ପୁତୁରା ଡକ୍ଟର ରଜା ହେୱାୱିଥରନା ତାଙ୍କ ଚିତାରେ ଅଗ୍ନି ସଂଯୋଗ କରିଥିଲେ ।

ଶ୍ରୀ ସମ୍ବୁଦ୍ଧ ଶାସନର ପ୍ରସାର ଓ ପ୍ରଗ୍ରର ପାଇଁ ଏବଂ ମାନବଜାତିର ସେବାପାଇଁ ଯେ ନିଜକୁ ଉତ୍ସର୍ଗ କରିଥିଲେ, ସେହି ସ୍ମରଣୀୟ ଜୀବନ ଶେଷରେ ଅଗ୍ନିରେ ଜଳି ପାଉଁଶ ହୋଇଗଲା ଓ ଇତିହାସ ପାଲଟିଗଲା ।

ସିଲୋନ (ଶ୍ରୀଲଙ୍କା)ର ଦୈନିକ ସମ୍ବାଦପତ୍ରିକାମାନଙ୍କରେ ବୌଦ୍ଧଧର୍ମ ଓ ଦେଶପାଇଁ ତାଙ୍କର ଉଲ୍ଲେଖନୀୟ ସେବା ସମ୍ପର୍କରେ ଅନେକ ସମ୍ବାଦ ଓ ଲେଖାମାନ ପ୍ରକାଶିତ ହୋଇଥିଲା ।

ତାଙ୍କ ଅନ୍ତେଷ୍ଟିକ୍ରିୟାର ଦୁଇ ସପ୍ତାହ ପରେ ତାଙ୍କର ଚିତାଭସ୍ମକୁ ଜାହାଜ ଯୋଗେ ମାଡ୍ରାସରୁ ତଲାଇମନାର ଓ ସେଠାରୁ ଟ୍ରେନ୍‌ରେ କଲମ୍ବୋ ନିଆଗଲା ।

'ଟାଇମ୍ସ ଅଫ୍ ସିଲୋନ' ସମ୍ବାଦପତ୍ରରେ ଏହି ଉତ୍ସବର ବିବରଣୀ ନମ୍ନୋକ୍ତ ପ୍ରକାରେ ପ୍ରକାଶିତ ହୋଇଥିଲା ।

"ଯେଉଁ ରାସ୍ତାରେ ମହାମାନ୍ୟ ଶ୍ରୀ ଦେବମିତ୍ର ଧର୍ମପାଳଙ୍କ ଚିତାଭସ୍ମ ଫୋର୍ଟ ରେଲୱେ ଷ୍ଟେସନରୁ ମଲିଗକଣ୍ଡେ ମନ୍ଦିରକୁ ଯାତ୍ରା କରୁଥିଲା, ସେହି ରାସ୍ତାର ଦୁଇ ଧାରରେ ଅଗଣିତ ଜନତା ଦଣ୍ଡାୟମାନ ହୋଇ ଚିତାଭସ୍ମକୁ ସମ୍ମାନ ଜଣାଉଥିଲେ । ଯେଉଁ ରାସ୍ତାରେ ଶୋଭାଯାତ୍ରା ଯାଉଥିଲା, ସେହି ରାସ୍ତାସାରା ଧଳାବାଲି ବିଛେଇ ଦିଆଯାଇଥିଲା ଓ ଧଳା ପତାକାମାନ ଉଡୁଥିଲା ।

ରେଲୱେ ଷ୍ଟେସନ୍‌ରେ ବହୁସଂଖ୍ୟକ ପୁରୋହିତ ଓ ସାଧାରଣ ଜନତା ଯେଉଁ ଟ୍ରେନ୍‌ରେ ଚିତାଭସ୍ମ ଆସୁଥିଲା, ସେହି ଟ୍ରେନ୍‌କୁ ଅପେକ୍ଷା କରିଥିଲେ । ଦ୍ୱାରଦେଶରେ ଯଥେଷ୍ଟ ପ୍ଲାଟଫର୍ମ ଟିକେଟ ମହଜୁଦ ଥିଲା । ମାକ୍ କଲମ ରୋଡ଼ରେ ପ୍ରଥମ ଜନସମାବେଶ ହୋଇଥିଲା, ଏଥିରେ ବିଭିନ୍ନ ସଂସ୍ଥାର ପ୍ରତିନିଧିମାନେ ଏକତ୍ରିତ ହୋଇ ଶୋଭାଯାତ୍ରାରେ ଯୋଗଦାନ କରିଥିଲେ ।

ସ୍ୱତନ୍ତ୍ର ଟ୍ରେନ୍‌ଟି ଚିତାଭସ୍ମ ଧରି ଘ୧.୩୦ ମିନିଟରେ ପହଞ୍ଚିଲା । ଏହି ଟ୍ରେନ୍‌ଟିର ଇଞ୍ଜିନ ଗୋଟିଏ ବିପୁଳକାୟ ସ୍ୱସ୍ତିକ ଓ କଅଁଳ ତାଳପତ୍ରରେ ସୁସଜ୍ଜିତ ହୋଇଥିଲା । ଷ୍ଟେସନର ବାହାରେ ଓ ଭିତରେ ସମାବେଶ ହୋଇଥିବା ଜନତା ସାଧୁ ସାଧୁ କହି ଚିତ୍କାର କରିଉଠିଲେ ।

ମହାମାନ୍ୟ ଦେବମିତ୍ରଙ୍କ ଘନିଷ୍ଠ ସମ୍ପର୍କୀୟ ଓ ଅନେକ ପୁରୋହିତ ସେହି ଟ୍ରେନ୍‌ରେ ଆସିଥିଲେ । ଯେଉଁ ପେଟିକାରେ ଚିତାଭସ୍ମ ଥିଲା, ତାହା ସର୍ବସାଧାରଣଙ୍କ ଦର୍ଶନ ପାଇଁ ସାଲୁନରେ ରଖାଗଲା । ଭାରତରୁ ଚିତାଭସ୍ମକୁ ଆଣିଥିବା ଦେବପ୍ରିୟ ଭଲିସିଂହେ (Devapriya Valisinghe) ଓ ଜାକବ ମୁନସିଂହେ (Jacob

Munasinghe), ନେଲ ହେୱାୱିଥରନେ (Neil Hewavitarne), ମହାମାନ୍ୟ ମହାନାୟକ ଥେରୋ (Maha Nayake Theros) ଅନ୍ୟ କେତେକ ନାୟକେ ଥେରୋ (Nayake Thero), ରାଜା ହେୱାୱିଥରନେ (Raja Hewavitarne) ଏହାର ଦାୟିତ୍ୱରେ ଥିଲେ ।

ଷ୍ଟେଲରେ ପୁରୋହିତମାନେ ଧର୍ମସ୍ତୋତ୍ର ପାଠ କରୁଥିଲେ । ସ୍ୱର୍ଗତ ମହାପୁରୁଷଙ୍କ ଭିଣୋଇ ମିଷ୍ଟର ଜାକବ ମୁନସିଂହେ ସଂଘ ପକ୍ଷରୁ ଚିତାଭସ୍ମ ଥିବା ପେଟିକାକୁ ମାଲୱାଟର ମହାମାନ୍ୟ ମହାନାୟକ ଥେରୋଙ୍କୁ ଅର୍ପଣ କଲେ । ତାହାପରେ ମହାନାୟକ ଥେରୋ ଏହି ଚିତାଭସ୍ମକୁ ସାର୍ ଡି. ବି. ଜୟତିଳକ (Sir D. B. Jayatilaka)ଙ୍କୁ ପ୍ରଦାନ କଲେ । ସାର୍ ଜୟତିଳକ ଏହା ଜନସାଧାରଣଙ୍କ ପକ୍ଷରୁ ଗ୍ରହଣ କଲେ ।

ଏହି ରଙ୍ଗବେରଙ୍ଗର ଚିତ୍ରିତ ପେଟିକାକୁ ଏକ ସିଲ୍କର ଚାନ୍ଦୁଆ ତଳେ ସାଧୁ ସାଧୁ ଚିତ୍କାର ଭିତରେ ଷ୍ଟେସନ ବାହାରକୁ ନିଆଗଲା ।

ଆସ୍ତେ ଆସ୍ତ ଶୋଭାଯାତ୍ରା ଆଗକୁ ଯିବାକୁ ଆରମ୍ଭ କଲା । ପଛେ ପଛେ କନ୍ଦାୟନ ନୃତ୍ୟଶିଳ୍ପୀ ଓ ଗୁଡ଼ାଏ ହସ୍ତୀ ଯାତ୍ରା କରୁଥିଲେ । ପରିଶେଷରେ ସାରନାଥର ମନ୍ଦିର ସହ ସାଦୃଶ୍ୟ ଥିବା ସ୍ୱତନ୍ତ୍ର ଘୋଡ଼ାଗାଡ଼ି ପେଟିକାଧରି ପହଞ୍ଚିଲା । ମହାମାନ୍ୟ ଦେବମିତ୍ର ଏହାକୁ ନିର୍ମାଣ କରିଥିଲେ । ଏହି ଘୋଡ଼ାଗାଡ଼ିଟି ମାକ କଲମ ରୋଡ଼ ଓ ପରସନ ରୋଡ଼ର ସଂଯୋଗସ୍ଥଳରେ ଥୁଆ ହୋଇଥିଲା । ମୁହାନ୍ଦିରାମ ପିଟର ୱିରେ ସେକରା ଏହି ପେଟିକାକୁ ଷ୍ଟେସନରୁ ମୁଣ୍ଡେଇ ମୁଣ୍ଡେଇ ଘୋଡ଼ାଗାଡ଼ି ପାଖକୁ ଆଣିଲେ । ଶୋଭାଯାତ୍ରା ବି ଧୀରେ ଧୀରେ ସର୍ଟସ ରୋଡ଼, ୟୁନିଅନ ପ୍ଲେସ୍ ଡିନ୍ସ ରୋଡ଼ ଦେଇ ମାଲିଗକନ୍ଦେ ମନ୍ଦିର ପାଖକୁ ଆଗେଇ ଚାଲିଲା । ଦିନ ୪.୩୦ମିନିଟରେ ସେଠାରେ ପହଞ୍ଚିଲା ।

ମହାମାନ୍ୟ ଦେବମିତ୍ରଙ୍କ ଚିତାଭସ୍ମକୁ ସମ୍ମାନ ପ୍ରଦର୍ଶନ କରିବା ପାଇଁ ବିପୁଳ ଜନତା ସେଠାରେ ଏକତ୍ରିତ ହୋଇଥିଲେ । ମୁଖ୍ୟଦ୍ୱାରରୁ ପେଟିକାକୁ ଶ୍ରୀ ସୁମଙ୍ଗଳ ହଲକୁ ନିଆଗଲା ଏବଂ ଗୋଟିଏ ସ୍ୱତନ୍ତ୍ର ଷ୍ଟାଣ୍ଡରେ ଏହି ଉଦ୍ଦେଶ୍ୟରେ ରଖାଗଲା । ମହାମାନ୍ୟ ମୋରାନ୍ଟୁଦୁୱେ ଧମାନନ୍ଦ ମହା ଥେରୋଙ୍କ ଦ୍ୱାରା ପାନସିଲ (Pansil) ଦିଆଗଲା । ତା'ପରେ ପେଟିକାକୁ ଉପର ମହଲାକୁ ନିଆଗଲା । ଯେଉଁପରି ସର୍ବସାଧାରଣ ଦେଖିପାରିବେ, ସେହିପରି ଭାବରେ ବାଲକୋନି ଉପରେ ସ୍ଥାପିତ କରାଗଲା । ଯେଉଁପରି ସମବେତ ହୋଇଥିବା ଜନତା ଏହାର ବିବରଣୀ ଶୁଣିପାରିବେ, ସେଥିପାଇଁ ବିଭିନ୍ନ ସ୍ଥାନରେ ମାଇକ୍ରୋଫୋନ୍ ଓ ଆମ୍ପଲିଫାୟାର ଖଞ୍ଜାଗଲା ।

**ସାଧାରଣ ସଭା :**

ତାହାପରେ ସାଧାରଣ ସଭା ଅନୁଷ୍ଠିତ ହେଲା । ପୁନରାୟ ପାନସିଲ ଦିଆଗଲା । ମାଲୱାର ମହାମାନ୍ୟ ଶ୍ରୀ ଶରଣାକର ସୁମଙ୍ଗଲ ମହାନାୟକେ ଥେରୋ (Sri Saranakara Sumangala Mahe Nayake) ଏଥିରେ ସଭାପତିତ୍ୱ କଲେ ଓ ସେହି ସ୍ୱର୍ଗତ ମହାପୁରୁଷଙ୍କ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଗଲା ।

ମହାମାନ୍ୟ କହାୱେ ରତ୍ନସାର (Kahawe Ratanasara), ମହାମାନ୍ୟ ଲୁନୁପୋକୁନେ ଧମାନନ୍ଦ (Lunupokune Dhammananda), ମହାମାନ୍ୟ ପଲାନେ ଭଜିରଗନନ (Palane Vajiragnana) ଏବଂ ମହାମାନ୍ୟ ଯୋଗୀରାଳ ପନାନନ୍ଦ ମହା ଥେରୋ (Yagijala Pannananda Maha Thero) ମହାସଂଘ ପକ୍ଷରୁ ଓ ସାର ଡି. ବି. ଜୟତିଲକେ (Sir D. B. Jayatilake), ମିଷ୍ଟର ଡବ୍ଲୁ. ଏ. ଡି ସିଲଭା (Mr. W. A. De Silva), ମିଷ୍ଟର ସି. ଡବ୍ଲୁ. ଡବ୍ଲୁ କନାଙ୍ଗରା (Mr. C. W. W. Kannangara) ପରି ଜାତୀୟ ନେତୃସ୍ଥାନୀୟ ବ୍ୟକ୍ତି ଦେଶପକ୍ଷରୁ ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କଲେ ।

ତାଙ୍କର ମୃତ୍ୟୁପରେ ବ୍ରହ୍ମଚାରୀ ଦେବପ୍ରିୟ ଭଲିସିଂହେ ସୋସାଇଟିର ସଂପାଦକ ଦାୟିତ୍ୱ ଗ୍ରହଣ କଲେ ଓ ତାଙ୍କର ପ୍ରଭୁଙ୍କର ସ୍ୱପ୍ନ ଓ ଲକ୍ଷ୍ୟକୁ ସଫଳ କରିବାରେ ନିଜକୁ ବ୍ରତୀ କଲେ ।

ଶ୍ରୀ ଦେବମିତ୍ର ଧର୍ମପାଳଙ୍କ ଦେହାନ୍ତ ପରେ ପ୍ରତ୍ୟେକ ବର୍ଷ ତାଙ୍କର ଜନ୍ମ ଦିବସକୁ ଭାରତ ଓ ଶ୍ରୀଲଙ୍କାର ମହାବୋଧି ସୋସାଇଟିର ପ୍ରତ୍ୟେକ କେନ୍ଦ୍ରରେ 'ଅନଗାରିକ ଧର୍ମପାଳ ଦିବସ' ଭାବରେ ସର୍ବସାଧାରଣ ସଭା ଓ ଧର୍ମକାର୍ଯ୍ୟାନୁଷ୍ଠାନ ମାଧ୍ୟମରେ ପାଳିତ ହୁଏ ।

୧୯୩୩ ମସିହାରେ ତଦାନିନ୍ତନ ସାଧାରଣ ସଂପାଦକ ମହାମାନ୍ୟ ଡକ୍ଟର ଦୋଦମଗୋଡ଼ା ରେୱାଥା ଥେରୋ (Dr. Dodamgoda Rewatha Thero) ଯେଉଁ ସ୍ଥାନରେ ଅନାଗରିକ ଶେଷନିଃଶ୍ୱାସ ତ୍ୟାଗ କଲେ, ସାରନାଥର ସେହି ସ୍ଥାନରେ ସେ ଗୋଟିଏ ଦ୍ୱିତଳବିଶିଷ୍ଟ ପ୍ରାସାଦ ନିର୍ମାଣ କରାଇଥିଲେ । ଏହାର ତଳମହଲାଟି ଅନଗାରିକଙ୍କୁ ଉତ୍ସର୍ଗ କରାଗଲା ଓ ଏହାକୁ ଧର୍ମପାଳ ମ୍ୟୁଜିୟମ ନାମରେ ନାମିତ କରାଗଲା । ତାଙ୍କ ରଚନାବଳୀ, ବୌଦ୍ଧଧର୍ମ ପାଇଁ କାର୍ଯ୍ୟ କରିବାଠାରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଉଠାଯାଇଥିବା ଫଟୋ, ୱାକିଂ ଷ୍ଟିକ୍, ହୁଇଲ ଚେୟାର, ସ୍ଲିପର, ହଳଦିଆ ବସ୍ତ୍ର ପ୍ରଭୃତି ବ୍ୟକ୍ତିଗତ ଜିନିଷପତ୍ର ଓ ସମସ୍ତ ସର୍ବସାଧାରଣ ଦର୍ଶନ ପାଇଁ ମ୍ୟୁଜିୟମରେ ରଖାଗଲା । ଏହା ବ୍ୟତୀତ ବୁଦ୍ଧଗୟା ଓ ସାରନାଥରେ ତାଙ୍କର ଦୁଇଟି ମୂର୍ତ୍ତି

ସଂସ୍ଥାପନ କରାଗଲା । ପଶ୍ଚିମବଙ୍ଗ ସରକାର କଲେଜ ଷ୍ଟ୍ରିଟ୍‌ରେ ତାଙ୍କର ଗୋଟିଏ ମୂର୍ତ୍ତି ସ୍ଥାପନ କଲେ ଓ କଲିକତାରେ ତାଙ୍କ ନାମରେ ଗୋଟିଏ ରାସ୍ତା ନାମିତ କଲେ । ଏହିପରି ଭାବରେ ପଶ୍ଚିମବଙ୍ଗ ସରକାର ତାଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କଲେ ।

ସାରନାଥରେ ମହାବୋଧି କମ୍ପ୍ଲେକ୍ସ ଦେଇ ଯାଇଥିବା ରାସ୍ତାକୁ 'ଧର୍ମପାଳ ରୋଡ୍' ନାମରେ ନାମିତ କରାଗଲା ।

ଶ୍ରୀଲଙ୍କାରେ କଲମ୍ବୋ ଓ କାଣ୍ଡି, ଅନୁରାଧାପୁର, ଗଲ୍ଲେ, ମଟରା ଓ କୁରୁନେଗେଲା ପରି ମୁଖ୍ୟ ସହରମାନଙ୍କରେ ଅନେକ ରାସ୍ତା ତାଙ୍କ ନାମରେ ନାମିତ କରାଯାଇଛି ।

ଅନଗାରିକ ଓ ତାଙ୍କର ମହତ କାର୍ଯ୍ୟାବଳୀ ଉପରେ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ଶ୍ରୀଲଙ୍କାର ଜାତୀୟବୀରଙ୍କ ତାଲିକାରେ ତାଙ୍କ ନାମ ଅନ୍ତର୍ଭୁକ୍ତ କରାଯାଇଛି ।

## ଧର୍ମପାଳଙ୍କ ଉଇଲ :

ଅନଗାରିକ ଧର୍ମପାଳ ଏକ ଉଇଲ୍ କରିଯାଇଛନ୍ତି । ସେ ଉଇଲ୍‌ରେ ସେ ଉଲ୍ଲେଖ କରିଛନ୍ତି – ବୁଦ୍ଧ ତଥାଗତଙ୍କ ଜୀବନୀ ରଚନା କରିବା ପାଇଁ ମୋର ଇଚ୍ଛା ଥିଲା; କିନ୍ତୁ ମନେହେଉଛି ଏ ଜୀବନରେ ସେ ଇଚ୍ଛା ପୂରଣ ହୋଇପାରିବ ନାହିଁ । ଯଦି ଆରଜନ୍ମରେ ଭାରତର କୌଣସି ସଂଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରେ ଏବଂ ପାଲି ଭାଷାରେ ବୌଦ୍ଧ ଧର୍ମଗ୍ରନ୍ଥ ଅଧ୍ୟୟନ କରେ, ତାହାହେଲେ ଜଣେ ବୌଦ୍ଧ ଭିକ୍ଷୁ ଭାବରେ ବୁଲି ବୁଲି ମୁଁ ସାରାଦେଶରେ ବୌଦ୍ଧଧର୍ମ ପ୍ରଚାର କରିବି ।

ଅନଗାରିକ ବୌଦ୍ଧଧର୍ମକୁ ମଣିଷର ଏକ ଜୀବନ୍ତ ବିଶ୍ୱାସରେ ପରିଣତ କରିପାରିଥିଲେ । ଆଗାମୀ ଶତାବ୍ଦୀର ଉତ୍ତରପୁରୁଷଙ୍କ ମନ ଓ ହୃଦୟ ଭିତରେ ସେ ସବୁଦିନ ପାଇଁ ବଞ୍ଚି ରହିବେ ।

## ଉପସଂହାର :

ଅନଗାରିକ ଧର୍ମପାଳଙ୍କ ଦ୍ୱାରା ଭାରତରେ ମହାବୋଧି ସୋସାଇଟିର ପ୍ରତିଷ୍ଠା ପରେ ଭାରତର ବହୁ ପ୍ରବୀଣ ରାଜନୈତିଜ୍ଞ, ବିଶିଷ୍ଟ ବୁଦ୍ଧିଜୀବୀ, ସମାଜ ସଂସ୍କାରକ ବୁଦ୍ଧଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଖୋଲାଖୋଲି ଭାବରେ ପୃଥିବୀର ବିଭିନ୍ନ ଦେଶରେ ବୌଦ୍ଧଧର୍ମର ପ୍ରଚାରରେ ନିଜକୁ ନିୟୋଜିତ କରିଥିଲେ । ସେମାନଙ୍କ ମଧ୍ୟରେ ପ୍ରମୁଖ ବ୍ୟକ୍ତିମାନେ ହେଲେ ବାବୁ ନରେନ୍ଦ୍ର ନାଥ ମୁଖାର୍ଜୀ, ରାୟ ବାହାଦୁର ନରେନ୍ଦ୍ର ନାଥ ସେନ, ଡକ୍ଟର ବେଣୀମାଧବ ବରୁଆ, ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁର, ସାର୍ ଆଶୁତୋଷ ମୁଖାର୍ଜୀ, ଡକ୍ଟର ଭୀମରାଓ ଆମ୍ବେଦକର, ସେଠ୍ ଯୁଗଳ କିଶୋର ବିର୍ଲା ।

ଘଟଣାକ୍ରମେ ୧୪ ଅକ୍ଟୋବର ୧୯୫୬ ମସିହାରେ ଡକ୍ଟର ଭୀମରାଓ ଆମ୍ବେଦକର ନାଗପୁରଠାରେ ଏକ ବର୍ଣ୍ଣାଢ୍ୟ ଉତ୍ସବରେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ତାଙ୍କ ସହିତ ଚାରି ଲକ୍ଷ ଦଳିତ ଓ ଅନ୍ୟାନ୍ୟ ବର୍ଗର ଲୋକ ସେହିଦିନ ମଧ୍ୟ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ଧୀରେ ଧୀରେ ଭାରତରେ ବୌଦ୍ଧଧର୍ମର ଆଦର ବଢ଼ିବାରେ ଲାଗିଛି ଏହା ଅସ୍ୱୀକାର କରିହେବ ନାହିଁ । ବର୍ତ୍ତମାନ ପୃଥିବୀରେ ଦୁଇଶହରୁ ଅଧିକ ଦେଶରେ ପ୍ରାୟ ୪୧ କୋଟି ବୌଦ୍ଧଧର୍ମାବଲମ୍ବୀ ଅବସ୍ଥାନ କରୁଛନ୍ତି ।



